ଆମ ସୁଭାଷ
ଡକ୍ଟର ବିମଳେନ୍ଦୁ ମହାନ୍ତି

ପ୍ରକାଶକ : ଆମ ଓଡ଼ିଶା
୪ଆର୍ ୧/୨, ୟୁନିଟ୍-୩
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ : ଶ୍ରୀରାମ ସ୍କ୍ରିନ୍ ପ୍ରିଣ୍ଟିଂ,
ଭୁବନେଶ୍ୱର-୭୫୧୦୦୭

ପ୍ରଥମ ସଂସ୍କରଣ : ଏପ୍ରିଲ୍, ୨୦୧୩
ତୃତୀୟ ମୁଦ୍ରଣ : ଜୁନ୍, ୨୦୧୯



ପ୍ରଚ୍ଛଦ ଚିତ୍ର: ଅନ୍ତର୍ଯ୍ୟାମୀ ବେହେରା
ପ୍ରସ୍ତୁତି : ମହେଶ୍ୱର ମହାରଣା

ମୂଲ୍ୟ : ଟ.୮୦/-

**Aama Subhas**
**Dr. Bimalendu Mahanty**

Publisher : Aama Odisha,
4R 1/2, Unit-3, Bhubaneswar-751001
e-mail : aamaodisha@gmail.com

Printed at : Sriram Screen Printing,
Bhubaneswar-751007

First edition : April, 2013
Third reprint : June, 2019



Price : Rs 80/-

ISBN : 978-81-89436-62-9

# ଦୁଇପଦ

ଭାରତର ସ୍ୱାଧୀନତା ଆନ୍ଦୋଳନ ବେଳେ ଅନେକ ଲୋକ ନିଜର ତ୍ୟାଗ, ସ୍ପଷ୍ଟବାଦିତା ଓ ଦେଶପ୍ରେମର ଆଦର୍ଶ ଯୋଗୁଁ ସେତେବେଳର ଜନଜୀବନରେ ଅଭିନବ ସ୍ପନ୍ଦନ ସୃଷ୍ଟି କରିଥିଲେ । କ୍ଷମତା ଲୋଭ, ଭୋଗସ୍ପୃହାଠାରୁ ବହୁ ଦୂରରେ ରହି ଦେଶମାତୃକାର ସେବାପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । କିନ୍ତୁ ଯେଉଁ ଅଳ୍ପ କେତେଜଣ ମହାନ ଜନନାୟକ ସ୍ୱାଧୀନତା ସଂଗ୍ରାମର ଅଗ୍ରସାରଥୀ ରୂପେ ଗଣ୍ୟ ସେମାନଙ୍କ ଭିତରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ବାରି ହୋଇପଡ଼ନ୍ତି । ଦେଶବାସୀଙ୍କ ସେବାରେ ନିଜକୁ ନିୟୋଜିତ କରିବାକୁ ସେ ବାଲ୍ୟକାଳରୁ ପ୍ରସ୍ତୁତି ଆରମ୍ଭ କରିଥିଲେ । ସ୍ୱାମୀ ବିବେକାନନ୍ଦଙ୍କ ଜୀବନୀ ଓ କାର୍ଯ୍ୟାବଳୀ ତାଙ୍କୁ ଅଶେଷ ପ୍ରେରଣା ଯୋଗାଇଥିଲା । ଧୀରେ ଧୀରେ ଦେଶପ୍ରେମର ନିଶା ତାଙ୍କୁ ଏପରି ଘାରିଥିଲା ଯେ ବ୍ରିଟିଶ୍ କବଳରୁ ଭାରତକୁ ମୁକ୍ତକରି ସ୍ୱାଧୀନ ଭାରତରେ ଭାଷା, ଜାତି, ଧର୍ମ ନିର୍ବିଶେଷରେ ସମସ୍ତେ କିଭଳି ଏକ ସୁଖକର ଜୀବନଯାପନ କରିବେ ସେହି ସ୍ୱପ୍ନରେ ସେ ଦିବାନିଶି ବିଭୋର ଥିଲେ ।

ଇଂରେଜ ସରକାରଙ୍କୁ କଳେ ବଳେ କୌଶଳେ ଭାରତ ଭୂମିରୁ ବିତାଡ଼ିତ କରିବାକୁ ସେ ଏକାକୀ ଯେଉଁଭଳି ଭାବେ ଭାରତବାସୀଙ୍କୁ ଐକ୍ୟବଦ୍ଧ କରିପାରିଥିଲେ ତାହା ଅବର୍ଣ୍ଣନୀୟ । ତାଙ୍କ ନାମ ଶୁଣିଲେ ଭାରତର ସବୁଆଡ଼େ ଲୋକଙ୍କ ହୃଦୟରେ ଅପୂର୍ବ ଉନ୍ମାଦନା ଖେଳିଯାଉଥିଲା । ସବୁ ସମୟରେ ନିଜର ଜୀବନକୁ ବିପନ୍ନ କରି ସେ ଯେଉଁଭଳି ଦୁଃସାହସିକ କାର୍ଯ୍ୟମାନ ସଂପାଦନ କରିପାରୁଥିଲେ ତାହା ତାଙ୍କ ଅପୂର୍ବ ଦେଶପ୍ରେମର ନିଦର୍ଶନ । ସୁଭାଷ ବୋଷଙ୍କ ଭଳି ଜାତୀୟତାବାଦୀ ନେତା, ବୀର ପୁରୁଷ, ବିପ୍ଳବୀ, ଦେଶପ୍ରେମୀ, ନିର୍ଭୀକ, ନିଃସ୍ୱାର୍ଥପର ବ୍ୟକ୍ତି ଭାରତରେ ଦୁର୍ଲଭ । ତାଙ୍କ ଜୀବନର ଆଲୋଚନା ଯେତେ କରୁଥିବା ଆମ ଦେଶର ଯୁବପିଢ଼ି ଦେଶପାଇଁ ତ୍ୟାଗ କରିବାକୁ ସେତେ ପ୍ରେରଣା ପାଉଥିବେ ।

କଟକର ଓଡ଼ିଆ ବଜାରର ଜାନକୀନାଥ ଭବନରେ ପ୍ରତିବର୍ଷ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ଜନ୍ମଦିବସ ପାଳନ ହୁଏ । ସ୍ୱାଧୀନତା ପରେ ଡକ୍ଟର ହରେକୃଷ୍ଣ

ମହତାବଙ୍କ ପୃଷ୍ଠପୋଷକତାରେ ଏହା ପାଳନ ହେଉଥିଲା । ଏହାର ଉଦ୍ୟୋକ୍ତାମାନେ ଥିଲେ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଓ ଆଇନଜୀବୀ ବିବୁଧେନ୍ଦ୍ର ମିଶ୍ର, ସ୍ୱାଧୀନତା ସଂଗ୍ରାମୀ ଓ ସମାଜସେବୀ ତ୍ରୈଲୋକ୍ୟ ନାଥ ମହାନ୍ତି, ଆଡ଼୍‌ଭୋକେଟ୍ ସୁରଜମଲ୍ଲ ଶାହା ଓ ମୁସ୍ତାଫିଜ୍ ଅହମ୍ମଦ ପ୍ରମୁଖ । ମୁଁ କଲେଜରେ ପଢ଼ିବାବେଳଠାରୁ ପ୍ରାୟ ପ୍ରତ୍ୟେକ ବର୍ଷ ନେତାଜୀ ଜୟନ୍ତୀ ଉତ୍ସବରେ ଯୋଗ ଦେଉଥିଲି । ପ୍ରଥମେ ନେତାଜୀଙ୍କ ବିଷୟରେ ବକ୍ତୃତା ଶୁଣି, ଲେଖାମାନ ପଢ଼ି ମୋର ଦୃଢ଼ ବିଶ୍ୱାସ ହେଲା ଯେ ଏଭଳି ଅନନ୍ୟ ତ୍ୟାଗୀ ପୁରୁଷ କେବଳ ଭାରତରେ ନୁହେଁ, ପୃଥିବୀରେ ମଧ୍ୟ ବିରଳ । ତାଙ୍କ ବିଷୟରେ ଏକ ପୁସ୍ତକ ରଚନା କରି ସେ ଭାରତକୁ, ଭାରତବାସୀଙ୍କୁ ବିଶେଷକରି ଓଡ଼ିଶାବାସୀଙ୍କୁ କିଭଳି ଭଲପାଆନ୍ତି ତାହାର ଅବତାରଣା କରିବାକୁ ଚେଷ୍ଟା କରିଛି ।

ପୁସ୍ତକ ରଚନା ସମୟରେ ମୋର ସହଧର୍ମିଣୀ ପ୍ରଫେସର ବେଦବତୀ ମହାନ୍ତି, ସାନଭାଇ ପ୍ରିୟବ୍ରତ ମହାନ୍ତି, ପୁଅ ଡାକ୍ତର ସୁଶାନ୍ତ ମହାନ୍ତି, ବୋହୂ ଡାକ୍ତର ନିତା ମହାନ୍ତି ବିଭିନ୍ନ ଭାବରେ ସହାୟତା କରିଛନ୍ତି । ସାଇ ଇଣ୍ଟରନେସନାଲ୍ ସ୍କୁଲ୍‌ର ନବମ ଶ୍ରେଣୀର ଛାତ୍ର, ମୋ ନାତି ନିଶାନ୍ତର ସୁଭାଷ ବୋଷଙ୍କ ବିଷୟରେ ଜାଣିବାର ଉତ୍କଣ୍ଠା ମୋତେ ଲେଖିବାକୁ ପ୍ରେରଣା ଯୋଗାଇଛି । ଯୁବ ଆଡ଼୍‌ଭୋକେଟ୍ ସରୋଜ କୁମାର ମିଶ୍ର ପୁସ୍ତକ ରଚନା ସମୟରେ ମୋତେ ସହଯୋଗ ଓ ପରାମର୍ଶ ଦେଇଛନ୍ତି । ଏ ସମସ୍ତଙ୍କ ନିକଟରେ ମୁଁ କୃତଜ୍ଞ ।

ଦୈନିକ 'ସମ୍ବାଦ'ର ସଂପାଦକ ତଥା 'ଆମ ଓଡ଼ିଶା'ର ଅଧ୍ୟକ୍ଷ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ ଏହି ଉଭୟ ଅନୁଷ୍ଠାନ ମାଧ୍ୟମରେ ଦୀର୍ଘଦିନ ଧରି ରାଜ୍ୟବାସୀଙ୍କ ମଧ୍ୟରେ ଯେପରି ଭାବରେ ଦେଶପ୍ରୀତି ଓ ଭାଷାପ୍ରୀତି ଜାଗ୍ରତ କରିବାକୁ ଏବଂ ସେବା ମନୋଭାବକୁ ପ୍ରୋତ୍ସାହିତ କରିବାକୁ ନିରବଚ୍ଛିନ୍ନ ଭାବରେ ଉଦ୍ୟମ କରି ଆସୁଛନ୍ତି, ତାହା ମୋତେ ଅନୁପ୍ରାଣିତ କରିଛି । ତାଙ୍କରି ନେତୃତ୍ୱରେ ପରିଚାଳିତ 'ଆମ ଓଡ଼ିଶା' ଏହି ପୁସ୍ତକଟି ପ୍ରକାଶ କରୁଥିବାରୁ ମୁଁ ତାଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ।

ମୋର ଆଶା ଏହି ପୁସ୍ତକ ପଢ଼ି ଆମ ରାଜ୍ୟର ଯୁବସମାଜ ଦେଶସେବା ପାଇଁ ଆଗଭର ହେବେ । ଦେଶର ମାଟି, ପାଣି, ପବନକୁ ଏବଂ ଜାତି-ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ଆପଣେଇ ନେବେ ।

**ବିମଳେନ୍ଦୁ ମହାନ୍ତି**

[redacted]

## ସୁଭାଷ ଚନ୍ଦ୍ର ବୋଷ

ଓଡିଶା ମାଟିରେ ବହୁ ବୀରସନ୍ତାନ ଜନ୍ମଗ୍ରହଣ କରି ନିଜର ଅସାଧାରଣ ଦେଶପ୍ରେମ ଓ ବୀରତ୍ୱଯୋଗୁଁ ବିଶ୍ୱ ଦରବାରରେ ଯୁଗ ଯୁଗ ଧରି ନିଜ ରାଜ୍ୟକୁ ମହିମାମଣ୍ଡିତ କରାଇଛନ୍ତି । ଖ୍ରୀ.ପୂ. ପ୍ରଥମ ଶତାବ୍ଦୀର ମହାମହିମ ମହାମେଘବାହନ ଐର ଖାରବେଳ ହୁଅନ୍ତୁ ବା ପଞ୍ଚଦଶ ଶତାବ୍ଦୀର ସୂର୍ଯ୍ୟବଂଶୀ ଗଜପତି ମହାରାଜା କପିଳେନ୍ଦ୍ର ଦେବ ହୁଅନ୍ତୁ କିମ୍ବା ସ୍ୱାଧୀନତା ଆନ୍ଦୋଳନରେ ବ୍ରିଟିଶ୍ ରାଜ୍ ବିରୁଦ୍ଧରେ ଆଜୀବନ ସଂଗ୍ରାମ କରିଥିବା ଚକରା ବିଶୋଇ ହୁଅନ୍ତୁ ବା ବୀର ସୁରେନ୍ଦ୍ର ସାଏ ହୁଅନ୍ତୁ ବା ସୁଭାଷ ଚନ୍ଦ୍ର ବୋଷ ହୁଅନ୍ତୁ, ସମସ୍ତେ ଏ ଜାତିର ନମସ୍ୟ । ଏଠାରେ କେବଳ ଅନନ୍ୟ ଦେଶପ୍ରେମୀ ଓ ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ବିଷୟରେ ଉଲ୍ଲେଖ କରାଯାଉଛି ।

## ଓଡିଶାର ସୁଭାଷ

ହଜାର ବର୍ଷର ପୁରୁଣା କଟକ ସହରରେ ୧୮୬୮ ମସିହା ଫେବୃଆରି ୨୩ ତାରିଖରେ ପ୍ରତିଷ୍ଠିତ ହୋଇଥିଲା ରେଭେନ୍ସା ମହାବିଦ୍ୟାଳୟ । ୧୮୭୯ ମସିହା ଅଗଷ୍ଟ ମାସରେ ସୁଭାଷ ଚନ୍ଦ୍ର ବୋଷଙ୍କ ପିତା ଜାନକୀନାଥ ବୋଷ ନିଜର ସାବତ ଭାଇ ବାବୁ ଦେବେନ୍ଦ୍ର ନାଥ ବସୁଙ୍କ ସହିତ କଟକ ଆସି ଏହି ମହାବିଦ୍ୟାଳୟରେ ଏଫ୍.ଏ. ଶ୍ରେଣୀରେ ନାମ ଲେଖାଇଥିଲେ । ୧୮୮୦ ମସିହାରେ ତାଙ୍କର ଶୁଭବିବାହ ପ୍ରଭାବତୀ ଦତ୍ତଙ୍କ ସହିତ ସମ୍ପନ୍ନ ହୋଇଥିଲା । ୧୮୮୨ ମସିହାରେ ରେଭେନ୍ସା ମହାବିଦ୍ୟାଳୟରୁ ଏଫ୍.ଏ. ପାଶ୍ କରି ସେ କଲିକତାକୁ ଆଇନ୍ ଶିକ୍ଷା ଅଧ୍ୟୟନ କରିବାକୁ ଯାଇଥିଲେ ଏବଂ ଆଇନ୍ ଶିକ୍ଷା ସମାପ୍ତି ପରେ ପୁନର୍ବାର ପିତାଙ୍କ ଅନୁମତି ନେଇ କଟକକୁ ଫେରିଆସି ଏଠାରେ ଆଇନ୍ (ଓକିଲାତି) ବ୍ୟବସାୟ ଆରମ୍ଭ କରିଥିଲେ । ଆଇନ ବ୍ୟବସାୟରେ ତାଙ୍କର ବିଚକ୍ଷଣତା ଅନୁଭବ କରି ତତ୍କାଳୀନ ବ୍ରିଟିଶ ସରକାର ତାଙ୍କୁ ୧୮୮୫ ମସିହାରେ ସରକାରୀ ଓକିଲ



ପିତା ଜାନକୀ ନାଥ ଓ ମାତା ପ୍ରଭାବତୀ ଦେବୀ

ଭାବରେ ନିଯୁକ୍ତି ଦେଲେ । ଉକ୍ତ କାର୍ଯ୍ୟରେ ଆଶାତୀତ ସଫଳତା ହାସଲ କରିପାରିଥିବା ହେତୁ ବ୍ରିଟିଶ ସରକାର ତାଙ୍କୁ ରାୟବାହାଦୁର ଉପାଧିରେ ଭୂଷିତ କରିଥିଲେ । ୧୯୦୫ ମସିହାଠାରୁ ସେ କଟକରେ ପବ୍ଲିକ୍ ପ୍ରସିକ୍ୟୁଟର ଥିଲେ ଏବଂ ୧୯୧୨ ଠାରୁ ବେଙ୍ଗଲ ଲେଜିସଲେଟିଭ କାଉନସିଲ୍‌ର ଜଣେ ସଭ୍ୟ ଥିଲେ । କିନ୍ତୁ ୧୯୩୦ ମସିହାରେ ସେ ଉଭୟ ପଦବୀକୁ ତ୍ୟାଗ କରିଥିଲେ । କଟକର ପରିବେଶ, କଳା ଓ ସଂସ୍କୃତି, ଲୋକମାନଙ୍କର ସରଳତାର ଚାଲିଚଳନ ଜାନକୀନାଥଙ୍କୁ ଆକର୍ଷିତ କରିଥିଲା ଏବଂ ସେ ନିଜ ଜୀବନର ୫୦ ବର୍ଷ ଏହି ସହରରେ ବିତାଇଥିଲେ । ଜାନକୀନାଥ ବୋଷ କଟକର ଓଡିଆ ବଜାରରେ ତାଙ୍କ ବାସଭବନ ତିଆରି କରିଥିଲେ । ଏହି ଓଡିଆ ବଜାରର ଜାନକୀନାଥ ଭବନରେ ୧୮୯୭ ମସିହା ଜାନୁଆରି ମାସ ୨୩ ତାରିଖ ଶନିବାର ମଧ୍ୟାହ୍ନରେ 'ସୁଭାଷ' ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ତାଙ୍କ ପିତାମାତାଙ୍କର ନବମ ସନ୍ତାନ ଓ ଷଷ୍ଠ ପୁତ୍ର । ସୁଭାଷଙ୍କର ଆଉ ୭ ଜଣ ଭାଇ ଓ ୬ ଜଣ ଭଉଣୀ ଥିଲେ । ସେମାନେ ହେଲେ-ପ୍ରମିଳାବାଳା, ସରଳାବାଳା, ସତୀଶ ଚନ୍ଦ୍ର, ଶରତ ଚନ୍ଦ୍ର, ସୁରେଶ ଚନ୍ଦ୍ର, ସୁଧୀର ଚନ୍ଦ୍ର, ସୁନୀଲ ଚନ୍ଦ୍ର, ତରୁବାଳା, ମାଳିନା, ପ୍ରତିଭା, କନକଲତା, ଶୈଳେଶ ଚନ୍ଦ୍ର ଓ ସନ୍ତୋଷ ଚନ୍ଦ୍ର । ଏହି ଭାଇଭଉଣୀମାନଙ୍କ ମଧ୍ୟରୁ

ସୁଭାଷ ଆଜୀବନ ତାଙ୍କ ଭାଇ ଶରତ ଚନ୍ଦ୍ରଙ୍କୁ ଅଧିକ ସମ୍ମାନ କରୁଥିଲେ ଓ ତାଙ୍କଠାରୁ ପରାମର୍ଶ ଗ୍ରହଣ କରୁଥିଲେ ।

ଜାନକୀନାଥ ବୋଷ ଥିଲେ ଜଣେ ଜନପ୍ରିୟ ବ୍ୟକ୍ତି ଏବଂ କଟକବାସୀଙ୍କ ପ୍ରୀତିଭାଜନ । ତେଣୁ କଟକବାସୀ ତାଙ୍କୁ କଟକ ମୁନିସିପାଲିଟିର ଚେୟାରମ୍ୟାନ ଭାବରେ ଅଧିଷ୍ଠିତ କରିଥିଲେ । ବିଭିନ୍ନ ପ୍ରକାର ସମାଜମଙ୍ଗଳ ଅନୁଷ୍ଠାନ ଓ ଶିକ୍ଷାନୁଷ୍ଠାନମାନଙ୍କର ସଭ୍ୟ ତଥା ଉପଦେଷ୍ଟା ଭାବରେ ଲୋକେ ତାଙ୍କୁ ଗ୍ରହଣ କରିଥିଲେ । ଏହି ପ୍ରକାର ସେବା ମନୋଭାବ ତାଙ୍କ ପୁତ୍ର ସୁଭାଷଙ୍କ ଭିତରେ ପ୍ରତିଫଳିତ ହୋଇଥିଲା ।

ସୁଭାଷଚନ୍ଦ୍ରଙ୍କର ମାତା ଶ୍ରୀମତୀ ପ୍ରଭାବତୀ ଦେବୀ ମଧ୍ୟ ଥିଲେ ଏକ ସଂଭ୍ରାନ୍ତ ଦତ୍ତ ପରିବାରର କନ୍ୟା । ସେ ଥିଲେ ଜଣେ ଧର୍ମପରାୟଣା ମହିଳା । ରାମକୃଷ୍ଣଙ୍କର ସେ ଥିଲେ ପରମ ଭକ୍ତ । ବାଲ୍ୟକାଳରୁ ସେ ଶିଶୁ ସୁଭାଷଙ୍କୁ ରାମକୃଷ୍ଣ ପରମହଂସ, ମା' ଶାରଦା ଓ ବିବେକାନନ୍ଦଙ୍କ ସମ୍ବନ୍ଧରେ ଅନେକ ଅଲୌକିକ କାହାଣୀ ଶୁଣାଇ ତାଙ୍କ କୋମଳ ମନ ମଧ୍ୟରେ ଏକ ଅଜଣା ଧର୍ମଭାବ ସୃଷ୍ଟି କରିଥିଲେ, ଯାହା ସୁଭାଷଙ୍କୁ ତାଙ୍କ ପରବର୍ତ୍ତୀ ଜୀବନରେ ପ୍ରଭାବିତ କରିଥିଲା । ଅତଏବ, ମାତାଙ୍କ ଆଧ୍ୟାତ୍ମିକ ପ୍ରଭାବ, ଯାହା ସୁଭାଷଙ୍କ ବାଲ୍ୟଜୀବନରେ ଏବଂ ଅଲକ୍ଷ୍ୟରେ, ତାଙ୍କ ଅଚେତନ ଓ ଅବଚେତନ ମନରେ ବସା ବାନ୍ଧିଥିଲା, ତାହା ତାଙ୍କ ଯୌବନର ସଚେତନ ମନରେ ପ୍ରକାଶ ପାଇଲା । ସୁଭାଷ ଥିଲେ ଗମ୍ଭୀର ପ୍ରକୃତିର ଶିଶୁ । ବଡ଼ ହୋଇ ପରବର୍ତ୍ତୀ ଜୀବନରେ ଜନତାର ଜଣେ ସେବକ ହେବା ପରେ ମଧ୍ୟ ସେ ତାଙ୍କ ଲଜ୍ଜାଜନିତ ଗମ୍ଭୀରତା ଛାଡ଼ିପାରି ନଥିଲେ ।

## ସ୍କୁଲରେ ପାଠପଢ଼ା

ସୁଭାଷ ପାଞ୍ଚ ବର୍ଷ ବୟସରେ ୧୯୦୨ ମସିହାରେ କଟକର ଏକ ମିଶନାରୀ ସ୍କୁଲ 'ପ୍ରୋଟେଷ୍ଟାଣ୍ଟ ୟୁରୋପିଆନ୍ ସ୍କୁଲ'ରେ ପାଠପଢ଼ା ଆରମ୍ଭ କରିଥିଲେ । ଏହି ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ମିଷ୍ଟର ୟଙ୍ଗ ଓ ପ୍ରଧାନ ଶିକ୍ଷୟିତ୍ରୀ ଥିଲେ ମିସେସ୍ ୟଙ୍ଗ ଏବଂ ଶିଶୁ ଶ୍ରେଣୀର ଶିକ୍ଷୟିତ୍ରୀ ଥିଲେ ମିସ୍ ସାରା ଲରେନ୍ସ । ସୁଭାଷ ପିଲାଦିନୁ ଜଣେ ମେଧାବୀ ଛାତ୍ର ହିସାବରେ ଏ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଏଠାରେ ସୂଚିତ କରାଯାଇପାରେ ଯେ, ସେହି ସ୍କୁଲରେ ଶିକ୍ଷା ଅପେକ୍ଷା ଖେଳ, କସରତ, ବ୍ୟାୟାମ ପ୍ରତି ଅଧିକ ଧ୍ୟାନ ଦିଆଯାଉଥିଲା । ସେତେବେଳେ ଭାରତୀୟ ଛାତ୍ରମାନଙ୍କୁ ବର୍ଣ୍ଣବୈଷମ୍ୟର ଶିକାର ହେବାକୁ ପଡୁଥିଲା । ଆଙ୍ଗ୍ଲୋ-ଇଣ୍ଡିଆନ୍ ଛାତ୍ରମାନଙ୍କୁ ସ୍ୱେଚ୍ଛାସେବକ ବାହିନୀରେ ଯୋଗଦାନ କରିବାକୁ ଅନୁମତି ଦିଆଯାଉଥିଲେ ସୁଦ୍ଧା ଭାରତୀୟ ଛାତ୍ରମାନଙ୍କୁ ସେଥିରୁ ବଂଚିତ

କରାଯାଉଥିଲା । ଭାରତୀୟ ପିଲା ଓ ଇଂରେଜ ପିଲାମାନଙ୍କ ମଧ୍ୟରେ ହେଉଥିବା ଏହି ପାତରଅନ୍ତର ଶିଶୁ ସୁଭାଷ ଲକ୍ଷ୍ୟ କରୁଥିଲେ ।

ସୁଭାଷ ଚନ୍ଦ୍ର ବୋଷ ୧୨ ବର୍ଷ ବୟସରେ ୧୯୦୯ ମସିହାରେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ନାମ ଲେଖାଇଲେ । ରେଭେନ୍ସା କଲେଜିଏଟ୍ ସ୍କୁଲର ବାତାବରଣ ତାଙ୍କୁ ଭଲ ଲାଗିଲା । ଏହି ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ବେଣୀମାଧବ ଦାସ । ସେ ଜଣେ ଜ୍ଞାନୀ, ଆଦର୍ଶ ତଥା ଉଚ୍ଚକୋଟିର ଶିକ୍ଷକ ଥିଲେ । ସେ ମଧ୍ୟ ଥିଲେ ଜଣେ ଉଗ୍ର ଜାତୀୟତାବାଦୀ ବ୍ୟକ୍ତି । ତାଙ୍କ କନ୍ୟା ବୀଣା ଦାସ ୧୯୩୨ ମସିହା ଫେବୃଆରି ମାସ ୬ ତାରିଖରେ ବଂଗଳାର ଗଭର୍ଣ୍ଣର ଷ୍ଟାନଲି ଜ୍ୟାକ୍‌ସନଙ୍କୁ ଗୁଳକରି ହତ୍ୟା କରିବାପାଇଁ ଉଦ୍ୟମ କରିଥିବା ଅଭିଯୋଗରେ ଛଅ ବର୍ଷପାଇଁ କାରାଦଣ୍ଡରେ ଦଣ୍ଡିତ ହୋଇଥିଲେ । ବେଣୀମାଧବ ଦାସଙ୍କ ବ୍ୟକ୍ତିତ୍ୱ ସୁଭାଷଙ୍କୁ ପ୍ରଭାବିତ କରିଥିଲା । ସୁଭାଷ ଶିକ୍ଷାରମ୍ଭ କରିବାର ମାତ୍ର ୨ ବର୍ଷ ପରେ ୧୯୧୧ ମସିହା ଅଗଷ୍ଟ ୧୧ ତାରିଖରେ ରେଭେନ୍ସା କଲେଜିଏଟ୍ ସ୍କୁଲ ପ୍ରାଙ୍ଗଣରେ ଖୁଦୀରାମଙ୍କ ଫାଶୀ ପାଇଥିବା ଦିବସକୁ ଛାତ୍ରମାନଙ୍କୁ ପାଳନ କରିବାକୁ ପ୍ରଶ୍ରୟ ଦେଇଥିବା ଅଭିଯୋଗରେ ପ୍ରଧାନ ଶିକ୍ଷକ ବେଣୀମାଧବ ଦାସଙ୍କୁ ପଶ୍ଚିମବଙ୍ଗର ନଦିୟା ଜିଲ୍ଲାର କୃଷ୍ଣନଗରକୁ ବଦଳି କରି ଦିଆଯାଇଥିଲା । ଏହା ସୁଭାଷଙ୍କ ମନରେ ଦାରୁଣ ଆଘାତ ପହଞ୍ଚାଇଥିଲା । ସ୍କୁଲର ପରବର୍ତ୍ତୀ ପ୍ରଧାନ ଶିକ୍ଷକ ଭାବରେ ଯୋଗ ଦେଇଥିଲେ ଅତ୍ୟନ୍ତ ପ୍ରତିଭାସମ୍ପନ୍ନ, ଇଂରାଜୀ ସାହିତ୍ୟରେ ଧୁରୀଣ ବ୍ୟକ୍ତି ନାରାୟଣ ପ୍ରସାଦ ମହାନ୍ତି ।

ନାରାୟଣ ପ୍ରସାଦ ମହାନ୍ତି ଇଂରାଜୀ ସାହିତ୍ୟରେ କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ୍ କରିବା ପରେ ତତ୍କାଳୀନ ଓଡିଶା-ବିହାରର ଶିକ୍ଷା ବିଭାଗରେ ଯୋଗଦାନ କରିଥିଲେ । ତାଙ୍କର ସ୍ୱାଧୀନ ଚିନ୍ତା, ଧୀଶକ୍ତି, ଇଂରାଜୀ ଭାଷାରେ ବିଶେଷ ପାରଦର୍ଶିତା ଯୋଗୁଁ ସେ କେବଳ ଛାତ୍ରମାନଙ୍କର ନୁହେଁ, ଇଂରେଜମାନଙ୍କର ମଧ୍ୟ ପ୍ରିୟପାତ୍ର ହୋଇଥିଲେ । ନାରାୟଣ ପ୍ରସାଦଙ୍କ ପୂର୍ବରୁ କେବଳ ଇଂରାଜୀ ସାହେବ ଓ ବଙ୍ଗାଳୀମାନେ ରେଭେନ୍ସା କଲେଜିଏଟ୍ ସ୍କୁଲର ପ୍ରଧାନ ଶିକ୍ଷକ ହୋଇଥିଲେ । ନାରାୟଣ ପ୍ରସାଦ ମହାନ୍ତି ପ୍ରଥମ ଓଡିଆ ପ୍ରଧାନ ଶିକ୍ଷକ ପଦବୀ ଅଳଂକୃତ କରିବାର ସୌଭାଗ୍ୟ ଅର୍ଜନ କରିଥିଲେ । ତେଣୁ କଟକରେ ଓଡିଆମାନଙ୍କ ତରଫରୁ ତାଙ୍କୁ ଅଭିନନ୍ଦନ ଜ୍ଞାପନ କରାଯାଇଥିଲା । ନାରାୟଣ ପ୍ରସାଦ ମହାନ୍ତି ଅଧୁନା ଜଗତସିଂହପୁର ଜିଲ୍ଲାର ଆଳିପିଙ୍ଗଳ ଗ୍ରାମରେ ଏକ ଜମିଦାର ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଉତ୍କଳୀୟ ସଂସ୍କୃତି ପ୍ରତି ପ୍ରଗାଢ ଅନୁରକ୍ତି ଥିଲା । ତାଙ୍କ ଜୀବନରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତିର ଅପୂର୍ବ ସମନ୍ୱୟ ଘଟିଥିଲା । ରେଭେନ୍ସା କଲେଜିଏଟ୍ ସ୍କୁଲରେ

ପ୍ରଧାନ ଶିକ୍ଷକ ରୂପେ ଯୋଗଦେବା ପୂର୍ବରୁ ସେ ରାଞ୍ଚି, ମୁଙ୍ଗେର, ଭାଗଲପୁର, ପାଟନା ପ୍ରଭୃତି ସ୍ଥାନରେ ଶିକ୍ଷା ବିଭାଗରେ କାର୍ଯ୍ୟ କରିଥିଲେ ।

ନାରାୟଣ ପ୍ରସାଦ ମହାନ୍ତିଙ୍କର ଚମତ୍କାର ଇଂରାଜୀ ପଢାଇବା ଶୈଳୀ ସୁଭାଷଙ୍କୁ ଆକୃଷ୍ଟ କରିଥିଲା । ୧୯୧୩ ମସିହାରେ ମାଟ୍ରିକ୍ୟୁଲେସନ ପାସ୍ କରିବା ସମୟରେ ନାରାୟଣ ପ୍ରସାଦ ମହାନ୍ତି ହିଁ ଥିଲେ ସୁଭାଷଙ୍କର ପ୍ରଧାନ ଶିକ୍ଷକ । ସୁଭାଷଙ୍କ ଏକ ସମସ୍ୟା ଥିଲା ସଂସ୍କୃତ ଭାଷା । ସେତେବେଳେ ସ୍କୁଲର ସଂସ୍କୃତ ଶିକ୍ଷକ ଥାଆନ୍ତି ପଣ୍ଡିତ ବିଶ୍ୱନାଥ କାବ୍ୟତୀର୍ଥ । ସେ ସୁଭାଷଙ୍କୁ ପାଖକୁ ଡାକି ସଂସ୍କୃତରେ କେତେକ ପ୍ରଶ୍ନ ପଚାରିଥିଲେ । ସୁଭାଷ ତା'ର ଉତ୍ତର ଦେଇ ନ ପାରିବାରୁ ପଣ୍ଡିତ ମହାଶୟ ସୁଭାଷଙ୍କୁ କହିଲେ, ତୁମେ ଆଦୌ ସଂସ୍କୃତ ଜାଣି ନାହଁ, କିପରି ଭାବରେ ପାସ୍ କରିବ ? ଉତ୍ତରରେ ସୁଭାଷ କହିଥିଲେ, ମୁଁ ଦୁଇଚାରି ଦିନରେ ସଂସ୍କୃତ ଶିଖିନେବି । ସମଗ୍ର ବଂଗ-ବିହାର-ଓଡିଶାରେ କଲିକତା ବିଶ୍ୱବିଦ୍ୟାଳୟରୁ ସୁଭାଷ ଚନ୍ଦ୍ର ବୋଷ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ରଖି ଉତ୍ତୀର୍ଣ୍ଣ ହୋଇଥିଲେ । କିନ୍ତୁ ଇଂରାଜୀ ବିଷୟରେ ନାରାୟଣ ପ୍ରସାଦଙ୍କ ବିଶେଷ ତତ୍ତ୍ୱାବଧାନରେ ପଢିଥିବାରୁ ସେ ସମଗ୍ର ବିଶ୍ୱବିଦ୍ୟାଳୟରେ ସର୍ବୋଚ୍ଚ ନମ୍ବର ୧୦୦ ରୁ ୯୮ ରଖିବାକୁ ସମର୍ଥ ହୋଇଥିଲେ । କେବଳ ସେତିକି ନୁହେଁ ସଂସ୍କୃତ ବିଷୟରେ ମଧ୍ୟ ସେ ପ୍ରଥମ ହୋଇଥିଲେ । ସେହି ପରୀକ୍ଷାରେ କଲିକତାର ମିତ୍ର ଇନ୍‌ଷ୍ଟିଚ୍ୟୁଟ୍‌ସର ପ୍ରମଥନାଥ ସରକାର ପ୍ରଥମ ଓ ତତ୍କାଳୀନ ବିହାର ପ୍ରଦେଶର ଚାଇଁବସା ବିଦ୍ୟାଳୟର ପ୍ରିୟ ରଂଜନ ସେନ ତୃତୀୟ ସ୍ଥାନ ଅଧିକାର କରିଥିଲେ । ଏହା ସୁଭାଷଙ୍କର ବିଦ୍‌ବତ୍ତା ଓ ଧୀଶକ୍ତିର ପରିଚୟ ଦିଏ ।


ମାତା ପ୍ରଭାବତୀଙ୍କ ସହ ସୁଭାଷ (ଡାହାଣ)

ରେଭେନ୍ସା କଲେଜିଏଟ୍ ସ୍କୁଲରେ ପଢୁଥିବା ସମୟରେ ଚାରୁଚନ୍ଦ୍ର ଗଂଗୋପାଧ୍ୟାୟ ଥିଲେ ସୁଭାଷଙ୍କ ସହପାଠୀ । ସେ ଦୁହେଁ ସର୍ବଦା ଧର୍ମ ଓ ମହାପୁରୁଷଙ୍କ ଜୀବନୀ ବିଷୟରେ ଆଲୋଚନା କରୁଥିଲେ । ଚାରୁ ସୁଭାଷଙ୍କୁ ବିବେକାନନ୍ଦଙ୍କ ଆଦର୍ଶରେ ଅନୁପ୍ରାଣିତ ହେବାପାଇଁ ପ୍ରବର୍ତ୍ତାଉଥିଲେ । ଏହି ପ୍ରଭାବ ଯୋଗୁଁ ସୁଭାଷ ବିବେକାନନ୍ଦଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଦଳିତ ଓ ନିଷ୍ପେଷିତଙ୍କୁ ସାହାଯ୍ୟ କରିବାକୁ ବଦ୍ଧପରିକର ହୋଇଥିଲେ ।

## କଲେଜ ଜୀବନ

ଏହା ପରେ ପିତା ଜାନକୀନାଥ ବୋଷ ୧୯୧୩ ମସିହାରେ ସୁଭାଷଙ୍କୁ ୧୬ ବର୍ଷ ୬ ମାସ ହୋଇଥିବା ବେଳେ କଲିକତାର ଶ୍ରେଷ୍ଠ ମହାବିଦ୍ୟାଳୟ ପ୍ରେସିଡେନ୍ସି କଲେଜରେ ତାଙ୍କ ନାମ ଲେଖାଇଦେଲେ । କଲେଜରେ ଯୋଗଦାନ ପରେ ସୁଭାଷଙ୍କ ସମ୍ପର୍କ ଗଢ଼ି ଉଠିଥିଲା ଦିଲ୍ଲୀପ ରାୟଙ୍କ ସହିତ । ସେ ଥିଲେ ଜଣେ ମେଧାବୀ ଛାତ୍ର ଓ ଅରବିନ୍ଦଙ୍କ ଦର୍ଶନରେ ତାଙ୍କର ପ୍ରଗାଢ଼ ପାଣ୍ଡିତ୍ୟ ରହିଥିଲା । ଉଭୟଙ୍କ ମଧ୍ୟରେ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ସଂପର୍କ ଅତୁଟ ରହିଥିଲା, ଯାହା ଦିଲ୍ଲୀପ ରାୟ ତାଙ୍କ 'ଦ ସୁଭାଷ ଆଇ ନୋ' ପୁସ୍ତକରେ ଲେଖିଛନ୍ତି । ଏହି କଲେଜରେ ଅଧ୍ୟୟନ କରୁଥିବା ସମୟରେ ଗ୍ରୀଷ୍ମଛୁଟିରେ ସୁଭାଷ ତାଙ୍କ ସାଙ୍ଗ ହେମନ୍ତ ସରକାରଙ୍କ ସହ ଆଧ୍ୟାତ୍ମିକ ଗୁରୁ ଅନ୍ୱେଷଣରେ ହରିଦ୍ୱାର ଯାତ୍ରା କଲେ । ଏହି ଯାତ୍ରା ସମୟରେ ସେ ଅନେକ ଆଶ୍ରମରେ ସାଧୁସନ୍ଥମାନଙ୍କର ସାନ୍ନିଧ ଲାଭ କରିଥିଲେ । କିନ୍ତୁ ସେମାନଙ୍କ ମଧ୍ୟରେ ଜାତିଆଣଭାବ ରହିଥିବା ଦେଖି ସେ ଅତ୍ୟନ୍ତ ଦୁଃଖିତ ହୋଇଥିଲେ ଏବଂ ହତୋତ୍ସାହ ହୋଇ ଘରକୁ ଫେରି ଆସିଥିଲେ । ୧୯୧୫ ମସିହାରେ ସୁଭାଷ ଇଣ୍ଟରମେଡିଏଟ୍ ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ସେହି କଲେଜରେ ବି.ଏ. ଶ୍ରେଣୀରେ ଦର୍ଶନ ଶାସ୍ତ୍ରରେ ଅନର୍ସ ନେଇ ପଢ଼ିବା ଆରମ୍ଭ କଲେ । ସେ ସମୟରେ ପ୍ରେସିଡେନ୍ସି କଲେଜର ପ୍ରିନ୍ସିପାଲ୍ ଥିଲେ ଏଚ. ଆର. ଜେମ୍ସ । କିନ୍ତୁ ଏହି ସମୟରେ ଏକ ଦୁଃଖଦ ଘଟଣା ଘଟିଥିଲା । କଲେଜର ସାମ୍ବତ୍ସରିକ ଉତ୍ସବରେ, ସରକାରଙ୍କ ଦ୍ୱାରା ନିଷିଦ୍ଧ ହୋଇଥିବା ବଙ୍ଗର ବିଶିଷ୍ଟ ନାଟ୍ୟକାର ଦ୍ୱିଜେନ୍ଦ୍ରଲାଲ ରାୟଙ୍କ ଲିଖିତ "ବଙ୍ଗ ଆମାର୍, ଜନନୀ ଆମାର"ସଂଗୀତକୁ ଗାନ କରାଯାଇଥିଲା । ଇ. ଏଫ୍. ଓଟନ୍ ନାମକ ଇତିହାସ ବିଭାଗର ଜଣେ ଇଂରେଜ ଅଧ୍ୟାପକ ଏହି ସଂଗୀତକୁ ଶୁଣି କ୍ରୋଧରେ ହିତାହିତ ଜ୍ଞାନ ହରାଇ ବଂଗବାସୀଙ୍କୁ କଟୁଭାଷା ଓ ଅଶାଳିନ ମନ୍ତବ୍ୟ ପ୍ରୟୋଗ କରିଥିଲେ । ଏ ବିଷୟରେ ପ୍ରିନସିପାଲଙ୍କୁ କୁହାଯିବା ପରେ ଓଟନ୍ ସାହେବ ସମସ୍ତଙ୍କୁ କ୍ଷମା ମାଗିଥିଲେ । କିନ୍ତୁ ପ୍ରତିଶୋଧର ସୁଯୋଗ ଖୋଜୁଥାନ୍ତି ଓଟନ୍ ସାହେବ । ଏକଦା ସେ କ୍ଲାସ୍ ନେଉଥିବା

ସମୟରେ କମଳ ବସୁ ନାମକ ଜଣେ ଛାତ୍ର ତାଙ୍କ ଶ୍ରେଣୀ ବାରଣ୍ଡାରେ ନିଜେ ପିନ୍ଧିଥିବା ଚଟିକୁ ଘୋଷାରି ଘୋଷାରି ଶବ୍ଦକରି ଚାଲିଗଲେ ଓ ପୁଣି ଚାଲି ଆସିଲେ । ଏହାଦ୍ୱାରା ଓଟନ୍ ସାହେବ ନିଜକୁ ଅପମାନିତ ବୋଧ କଲେ । ମାନସିକ ଭାରସାମ୍ୟ ହରାଇ ଓଟନ୍ ସାହେବ ପଦାକୁ ବାହାରି ଆସିଲେ ଓ ସୁଭାଷଙ୍କ ସହପାଠୀ କମଳ ବସୁଙ୍କୁ ମାଡ ମାରି ତଳେ ପକାଇଦେଲେ । ଏହାର ପ୍ରତିବାଦରେ ଛାତ୍ରମାନେ ଶ୍ରେଣୀବର୍ଜନ ଓ ଧର୍ମଘଟ କରିଥିଲେ । ପ୍ରିନ୍ସିପାଲ୍ ଜେମ୍ସ ଏହି ଘଟଣାରେ ଛାତ୍ରନେତା ସୁଭାଷଙ୍କୁ ଦାୟୀ କରି ତାଙ୍କୁ କଲେଜରୁ ଦୁଇ ବର୍ଷପାଇଁ ବହିଷ୍କାର ଆଦେଶ ଦେଇଥିଲେ ।

ସୁଭାଷଙ୍କ କଲେଜରୁ ବହିଷ୍କୃତ ହେବା ସମ୍ବାଦରେ ପିତାମାତା ବିବ୍ରତ ହେଲେ କିନ୍ତୁ ସୁଭାଷଙ୍କୁ ନୈତିକ ସମର୍ଥନ ଦେଲେ । ୧୯୧୬ ମସିହାରେ ସୁଭାଷ କଲିକତାରୁ ନିଜ ପ୍ରିୟ ସହର କଟକକୁ ଫେରିଆସି ସେଠାରେ ଅବସ୍ଥାନ କଲେ । ଏହି ସମୟରେ ସେ ନିଜକୁ ସମାଜସେବାରେ ନିୟୋଜିତ କରିଥିଲେ । ବିଶେଷକରି ଅସ୍ପୃଶ୍ୟତା ଓ ଜାତିଭେଦ ବିରୁଦ୍ଧରେ ସେ ସଚେତନତା ସୃଷ୍ଟି କରିଥିଲେ । ଆଦିବାସୀମାନଙ୍କ ଉତ୍ଥାନ ପାଇଁ ମଧ୍ୟ ସେ ଚେଷ୍ଟିତ ଥିଲେ । ପ୍ରାୟ ଏକ ବର୍ଷ ତିନି ମାସ କାଳ କଟକରେ ରହିବା ପରେ କଲିକତା ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ସାର୍ ଆଶୁତୋଷ ମୁଖର୍ଜୀଙ୍କ ସହାୟତାରେ ୧୯୧୭ ମସିହା ଜୁଲାଇ ମାସରେ କଲିକତାର ସ୍କଟିସ୍ ଚର୍ଚ୍ଚ କଲେଜରେ ନାମ ଲେଖାଇବାକୁ ସେ ସକ୍ଷମ ହୋଇଥିଲେ । ୧୯୧୯ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରି ସେ ବି.ଏ. ପାଶ୍ କଲେ । ପ୍ରଥମ ସ୍ଥାନ ଅଧିକାର କରିଥିଲେ ପ୍ରେସିଡେନ୍ସି କଲେଜର ଛାତ୍ର ସତ୍ୟେନ୍ଦ୍ର ନାଥ ବନ୍ଦୋପାଧ୍ୟାୟ ।



କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନରତ ସୁଭାଷ

## ଆଇ.ସି.ଏସ୍. ହେବାପାଇଁ ଇଂଲଣ୍ଡ ଯାତ୍ରା

ଏହା ପରେ ସେ ଏମ୍.ଏ. ଶ୍ରେଣୀରେ ନାମ ଲେଖାଇଲେ, କିନ୍ତୁ କିଛି ଦିନ ପରେ ପିତା ଜାନକୀନାଥ ବୋଷ ଓ ବଡ଼ଭାଇ ଶରତ ଚନ୍ଦ୍ର ବୋଷଙ୍କ ନିର୍ଦ୍ଦେଶରେ ଆଇ.ସି.ଏସ୍. ପରୀକ୍ଷା ପ୍ରସ୍ତୁତିପାଇଁ ୧୯୧୯ ମସିହା ସେପ୍ଟେମ୍ବର ୧୫ ତାରିଖରେ ସେ ଇଂଲଣ୍ଡ ଯାତ୍ରା କଲେ। ସେଠାରେ ନଭେମ୍ବର ମାସରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇ ଆଇ.ସି.ଏସ୍. ପରୀକ୍ଷାପାଇଁ ପ୍ରସ୍ତୁତି ଚଳାଇଲେ। କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ସୁଭାଷ ଉଇଲିୟମ୍ ହଲ୍‌ରେ ରହୁଥିଲେ। ସେଠାରେ ମଧ୍ୟ ତାଙ୍କ କଲେଜ ଜୀବନର ପୁରୁଣା ବନ୍ଧୁ ଦିଲ୍ଲୀପ ରାୟ ଥିଲେ। ଦିଲ୍ଲୀପଙ୍କ ସହ ସୁଭାଷଙ୍କ ଘନିଷ୍ଠତା ବଢ଼ିଗଲା। ଦୁଇ ବନ୍ଧୁଙ୍କ ମଧ୍ୟରେ ଅନେକ ଏକାନ୍ତ ଆଲୋଚନା ହୁଏ ଓ ତାଙ୍କର ଆଲୋଚନାର ବିଷୟ ଥାଏ, ଭାରତର ଗୌରବମୟ ଇତିହାସ ଓ ସ୍ୱାଧୀନତାର ଆବାହନୀ। ଏତଦ୍‌ବ୍ୟତୀତ କେତେକ ଇଂରେଜ ଛାତ୍ରମାନଙ୍କ ସହିତ ସୁଭାଷଙ୍କ ଘନିଷ୍ଠତା ବଢ଼ିଗଲା ଏବଂ ସେହି ବନ୍ଧୁମାନଙ୍କର ଶୃଙ୍ଖଳିତ ଜୀବନ ଓ ସମୟାନୁବର୍ତ୍ତିତାଦ୍ୱାରା ସେ ବହୁତ ଭାବରେ ପ୍ରଭାବିତ ହୋଇଥିଲେ। ଏହି ପରିପ୍ରେକ୍ଷୀରେ ସେ ଲେଖିଥିଲେ, ଏଠାରେ ଲୋକମାନଙ୍କର ସମୟ ଜ୍ଞାନ ଅଛି। ସେମାନଙ୍କର ଅନେକ ଦୋଷ ଥିବା ସତ୍ତ୍ୱେ ବି ଅନେକ ଭଲ ଗୁଣ ଅଛି। ସୁଭାଷଙ୍କ ଏହି ମନୋଭାବକୁ ତାଙ୍କ ସାଥି ଦିଲ୍ଲୀପ ରାୟ ପସନ୍ଦ କରୁନଥିଲେ। ସେତେବେଳେ ସେ ଓଡିଶାର ସ୍ୱନାମଧନ୍ୟ ବୈଜ୍ଞାନିକ, ଶିକ୍ଷାବିତ୍ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ସହିତ ବନ୍ଧୁତା ସ୍ଥାପନ କରିଥିଲେ । ଏହି ବନ୍ଧୁତାକୁ ରକ୍ଷାକରି ବହୁ ବର୍ଷ ଧରି ଡକ୍ଟର ପରିଜାଙ୍କ ସହିତ ସେ ପତ୍ରାଳାପ କରୁଥିଲେ। ୧୯୨୦ ମସିହା ଜୁଲାଇ ମାସରେ ଲଣ୍ଡନରେ ଅନୁଷ୍ଠିତ ହୋଇଥିବା ଆଇ.ସି.ଏସ୍. ପରୀକ୍ଷାରେ ସୁଭାଷ ଚତୁର୍ଥ ସ୍ଥାନ ଅଧିକାର କରିବାର ଗୌରବ ଅର୍ଜନ କରିଥିଲେ।

୧୯୧୯ ମସିହା ଏପ୍ରିଲ ୧୩ ତାରିଖରେ ଜେନେରାଲ ଡାୟାରଙ୍କଦ୍ୱାରା ଜାଲିଆନାୱାଲାବାଗ ହତ୍ୟାକାଣ୍ଡ ଘଟିଥିଲା। ଏହି କାର୍ଯ୍ୟକୁ ଇଂଲଣ୍ଡର ଲୋକମାନେ ସମର୍ଥନ ଜଣାଇଥିଲେ। କିନ୍ତୁ ଏହାଦ୍ୱାରା ଗାନ୍ଧିଜୀ ଅତି ବ୍ୟଥିତ ହୋଇପଡ଼ିଥିଲେ। ଗାନ୍ଧିଜୀ ବ୍ରିଟିଶ ସରକାର ସହିତ ଅସହଯୋଗ କରିବା ପ୍ରସ୍ତାବ ଦେବା ସଂଗେ ସଂଗେ ବ୍ରିଟିଶ ପଦବୀ ପାଇଥିବା ସମସ୍ତ ଭାରତୀୟଙ୍କୁ ସେ ପଦବୀଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିବା ପାଇଁ ପ୍ରବର୍ତ୍ତାଇଥିଲେ। ଏହାର ପ୍ରଭାବ ସୁଭାଷ ବୋଷଙ୍କ ଉପରେ ମଧ୍ୟ ପଡ଼ିଥିଲା। ଆଜୀବନ ଦେଶସେବାର ସ୍ୱପ୍ନରେ ବିଭୋର ସୁଭାଷ ବୋଷ ଜୀବନରେ ଧନ, କ୍ଷମତା, ପଦପଦବୀ, ସ୍ୱଚ୍ଛନ୍ଦତା ଲାଭ କରିବାର ବିରାଟ ପ୍ରଲୋଭନକୁ ତ୍ୟାଗ କରି ଆଇ.ସି.ଏସ୍. ପଦବୀରୁ ଇସ୍ତଫା ପ୍ରଦାନ କଲେ। ଏହି ସମୟରେ ସେ ତାଙ୍କର ବଡ଼ଭାଇ ଶରତ ଚନ୍ଦ୍ରଙ୍କ ପାଖକୁ ଏକ ପତ୍ରରେ ଲେଖିଥିଲେ-

''ଆଇ.ସି.ଏସ୍. ପରୀକ୍ଷା ସମସ୍ତ ସାଂସାରିକ ସୁଖ-ସ୍ୱାଚ୍ଛନ୍ଦ୍ୟ ଦେଇପାରିବ; କିନ୍ତୁ ନିଜର ଆଧାତ୍ମିକ ବା ଜାତୀୟ ଲକ୍ଷ୍ୟ ଏହା ପୂରଣ କରିପାରିବ ନାହିଁ - ମୁଁ ଏକ ସ୍ୱାର୍ଥପର, ନିର୍ଦ୍ଦୟ ଅମଲାତନ୍ତ୍ରର ଦାସ ହୋଇପାରିବି ନାହିଁ।... ଯଦି ସି. ଆର. ଦାସ ଏ ବୟସରେ ସମସ୍ତ ତ୍ୟାଗ କରି ଜୀବନରେ ଅନିଶ୍ଚିତତାର ସମ୍ମୁଖୀନ ହୋଇପାରିଲେ, ମୁଁ ତ ଯୁବକ, ମୁଁ କାହିଁକି ନ ପାରିବି... ଅରବିନ୍ଦ ଘୋଷଙ୍କର ଜ୍ୱଳନ୍ତ ଉଦାହରଣ ମୋ ଆଖି ଆଗରେ ଭାସିଯାଉଛି ଏବଂ ମୋତେ ତାହା ସମସ୍ତ ତ୍ୟାଗର ପ୍ରେରଣା ଦେଉଛି... ମୁଁ ଗଭୀର ଭାବରେ ଅନୁଭବ କରୁଛି ଯେ, ବ୍ରିଟିଶ୍ ସରକାର ସହିତ କୌଣସି ପ୍ରକାର ସମ୍ପର୍କ ରଖି ମୁଁ ମୋର ହସ୍ତକୁ କଳଂକିତ କରିବି ନାହିଁ।''



ଇଂଲଣ୍ଡରେ ଆଇ. ସି.ଏସ୍ ପରୀକ୍ଷାର୍ଥୀ ସୁଭାଷ

ଅନ୍ୟ ଏକ ପତ୍ରରେ ସେ ଲେଖିଥିଲେ-''ମୁଁ ଏହା ବିଶ୍ୱାସ କରିବାକୁ ଆରମ୍ଭ କରିଛି ଯେ ବ୍ରିଟିଶ୍ ସରକାର ସହିତ ଆମେ ସକଳ ପ୍ରକାର ସମ୍ପର୍କ ଛିଣ୍ଡାଇ ଦେବାର ବେଳ ବର୍ତ୍ତମାନ ଆସିଯାଇଛି,... ଏବଂ ପରିଶେଷରେ ନିଷ୍ପତ୍ତି। ଏପରି ସରକାରଙ୍କୁ ଶେଷ କରିଦେବାର ଶ୍ରେଷ୍ଠ ପନ୍ଥା ହେଲା ଏଥିରୁ ଓହରିଯିବା... ମୁଁ କିଛିଦିନ ପୂର୍ବେ ମୋର ଇସ୍ତଫା ଦେଇସାରିଛି...।''

## କଂଗ୍ରେସରେ ଯୋଗଦାନ

ଶେଷରେ ବିଲାତ ଯିବାର ବର୍ଷେ ଦଶମାସ ପରେ ସେ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ। ସୁଭାଷ ଯେଉଁ ଜାହାଜରେ ଆସୁଥିଲେ, ସେହି ଜାହାଜରେ ଆସୁଥିଲେ ବିଶ୍ୱକବି

ରବୀନ୍ଦ୍ରନାଥ ଠାକୁର । କବିଗୁରୁଙ୍କ ସହିତ ଯାତ୍ରାପଥରେ କଂଗ୍ରେସର ଅସହଯୋଗ ଆନ୍ଦୋଳନର ନୂତନ କୌଶଳ ସମ୍ପର୍କରେ ଆଲୋଚନା କରି ଜାଣିପାରିଲେ ଯେ କବିଗୁରୁ ଗାନ୍ଧିଜୀଙ୍କ ଆନ୍ଦୋଳନ ପ୍ରତ୍ୟାହାର ନୀତିକୁ ସମର୍ଥନ କରୁଥିଲେ । ରବୀନ୍ଦ୍ରନାଥ ସୁଭାଷଙ୍କୁ ପ୍ରଶ୍ନ କରିଥିଲେ, "ତୁମେ ଆଇ.ସି.ଏସ୍.ରୁ ଇସ୍ତଫା ଦେବା କ'ଣ ସତ ?" ସୁଭାଷ କହିଥିଲେ, "ହଁ । ମୁଁ ଭାବୁଛି ସ୍ୱାଧୀନତା ସଂଗ୍ରାମରେ ଯୋଗଦେବି ।" ସେହି ସମୟରେ ରବୀନ୍ଦ୍ରନାଥ ଠାକୁର ଗାନ୍ଧିଜୀଙ୍କୁ ଭେଟିବାକୁ ସୁଭାଷଙ୍କୁ ପରାମର୍ଶ ଦେଇଥିଲେ । ୧୯୨୧ ମସିହା ଜୁଲାଇ ୧୬ ତାରିଖରେ ସୁଭାଷ ବମ୍ବେରେ ପହଞ୍ଚିଲେ । ସେହିଦିନ ସୁଭାଷ ଗାନ୍ଧିଜୀଙ୍କୁ ତାଙ୍କର ଲାବର୍ଣ୍ଣ ରୋଡ୍‌ସ୍ଥ ବାସଭବନ 'ମଣିଭବନ' ରେ ସାକ୍ଷାତ କଲେ ଓ ଭାରତର ସ୍ୱାଧୀନତା ପରିପ୍ରେକ୍ଷୀରେ କଂଗ୍ରେସର ଆଭିମୁଖ୍ୟ ତଥା କର୍ମପନ୍ଥା ବିଷୟରେ ଆଲୋଚନା କଲେ । ଗାନ୍ଧିଜୀ ସୁଭାଷଙ୍କୁ କଲିକତାରେ ପହଞ୍ଚି ଦେଶବନ୍ଧୁ ଚିତ୍ତରଂଜନ ଦାସଙ୍କ ସହ ସାକ୍ଷାତ କରିବାକୁ ପରାମର୍ଶ ଦେଇଥିଲେ । ଗାନ୍ଧିଜୀଙ୍କ ଉତ୍ତରରେ ବୀତସ୍ପୃହ ହୋଇ ସୁଭାଷ ହୃଦୟଙ୍ଗମ କରିପାରିଲେ ଯେ, ଗାନ୍ଧିଜୀ ତଥା କଂଗ୍ରେସର ସ୍ୱାଧୀନତା ପ୍ରାପ୍ତି ନେଇ କୌଣସି ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନାହିଁ । ତେଣୁ ସେ କଲିକତା ଯାଇ ଦେଶବନ୍ଧୁ ଚିତ୍ତରଂଜନ ଦାସଙ୍କ ଅଧୀନରେ କାର୍ଯ୍ୟ କଲେ । ଚିତ୍ତରଂଜନ ଦାସ ଥିଲେ ଜଣେ ବଳିଷ୍ଠ ଦେଶଭକ୍ତ । ଏଠାରେ ସ୍ମରଣ କରିଦିଆଯାଇପାରେ ଯେ, ୧୯୨୦ ନାଗପୁର କଂଗ୍ରେସ ଅଧିବେଶନରେ ଚିତ୍ତରଂଜନ ଦାସ ଦୃଢ଼ କଣ୍ଠରେ ଘୋଷଣା କରିଥିଲେ ଯେ, ସେ ତାଙ୍କର ଓକିଲାତି ବ୍ୟବସାୟ ତ୍ୟାଗକରି ନିଜକୁ ସଂପୂର୍ଣ୍ଣ ଭାବରେ ଦେଶସେବାରେ ବିନିଯୋଗ କରିବେ । ଚିତ୍ତରଂଜନ ଦାସ ଥିଲେ ସୁଭାଷଙ୍କ ରାଜନୈତିକ ଆଦର୍ଶ । ସୁଭାଷଙ୍କ ପ୍ରେରଣାଦାତାମାନଙ୍କ ମଧ୍ୟରେ ଅନ୍ୟ ବ୍ୟକ୍ତିତ୍ୱମାନେ ଥିଲେ ବାଲ ଗଙ୍ଗାଧର ତିଳକ ଓ ଅରବିନ୍ଦ ଘୋଷ । ଏହା ପରେ ସୁଭାଷ କଂଗ୍ରେସରେ ଯୋଗଦାନ କଲେ । ଚିତ୍ତରଂଜନ ଦାସ ସୁଭାଷଙ୍କ ବ୍ୟକ୍ତିତ୍ୱରେ ଗଭୀର ଭାବରେ ପ୍ରଭାବିତ ହୋଇଥିଲେ । ସେହି ସମୟରେ କଂଗ୍ରେସ ସାରା ଦେଶରେ ସରକାରଙ୍କ ସହିତ ଅସହଯୋଗ ଆନ୍ଦୋଳନ ଚଳାଇଥାଏ । ଚିତ୍ତରଂଜନ ସୁଭାଷଙ୍କ ଉପରେ ବହୁ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନ୍ୟସ୍ତ କରିଥିଲେ । ତନ୍ମଧ୍ୟରୁ ଜାତୀୟ ସ୍ୱେଚ୍ଛାସେବକ ବାହିନୀ (National Volunteer Core)ର ମୁଖ୍ୟ ଭାବରେ ସୁଭାଷ କାର୍ଯ୍ୟ ଆରମ୍ଭ କଲେ । ସେ ନୂଆକରି ପ୍ରତିଷ୍ଠିତ ହୋଇଥିବା ଜାତୀୟ କଲେଜ (National College)ର ଦାୟିତ୍ୱ ମଧ୍ୟ ଗ୍ରହଣ କରିଥିଲେ । ୧୯୨୧ ମସିହା ଜୁଲାଇ ମାସରେ ବମ୍ବେଠାରେ ହୋଇଥିବା ପ୍ରଥମ ସାକ୍ଷାତରୁ ୧୯୪୦ ମସିହା ଜୁନ୍ ମାସରେ ୱାର୍ଦ୍ଧାଠାରେ ହୋଇଥିବା ଶେଷ ସାକ୍ଷାତ ପର୍ଯ୍ୟନ୍ତ ଗାନ୍ଧିଜୀ ଓ ସୁଭାଷଙ୍କ ରାଜନୈତିକ ଦୃଷ୍ଟିଭଙ୍ଗୀରେ କେବେ ସଂପୂର୍ଣ୍ଣ ମେଳ ହୋଇନଥିଲା ।

ଏହି ସମୟରେ ଇଂରେଜ ସରକାର ଘୋଷଣା କଲେ ଯେ ଇଂଲଣ୍ଡର ଯୁବରାଜ ପ୍ରିନ୍ସ ଅଫ୍ ୱେଲସ୍ ୧୯୨୧ ମସିହା ନଭେମ୍ବର ୧୭ ତାରିଖରେ ବମ୍ବେରେ ପହଞ୍ଚିବେ । ସେ ଭାରତର ବିଭିନ୍ନ ସହର ପରିଦର୍ଶନରେ ଯିବେ ଏବଂ ତାଙ୍କୁ ସବୁଠାରେ ବିପୁଳ ସମ୍ବର୍ଦ୍ଧନା ଦେବାର ବ୍ୟବସ୍ଥା ସରକାର କରିଥାନ୍ତି । କିନ୍ତୁ ଜାତୀୟ କଂଗ୍ରେସ ଏହି ନିଷ୍ପତ୍ତିର ବିରୋଧ କରୁଥାଏ । ନଭେମ୍ବର ୧୭ ତାରିଖ ଦିନ ଯୁବରାଜ ବମ୍ବେରେ ପହଞ୍ଚିବା ପରେ କଂଗ୍ରେସର ଆହ୍ୱାନଯୋଗୁଁ ବମ୍ବେ ସହରରେ ଯୁବରାଜଙ୍କ ସମ୍ବର୍ଦ୍ଧନା ଅସଫଳ ହେଲା । ଏହା ସରକାରଙ୍କୁ ଲଜ୍ଜିତ କରିଥିଲା ଏବଂ ସରକାରଙ୍କ କୋପଦୃଷ୍ଟି ଦେଶବନ୍ଧୁ ଚିତ୍ତରଂଜନ ଓ ସୁଭାଷଚନ୍ଦ୍ରଙ୍କ ଉପରେ ପଡ଼ିଲା । ୧୯୨୧ ମସିହା ଡିସେମ୍ବର ୧୦ ତାରିଖ ଦିନ ଏହି ଦୁଇଜଣଙ୍କୁ ପୋଲିସ୍ ଗିରଫ କଲା । ତାଙ୍କୁ ଛଅ ମାସ ଜେଲଦଣ୍ଡ ଆଦେଶ ହୋଇଥିଲା । ସୁବାଷଚନ୍ଦ୍ରଙ୍କର ଏହା ହେଉଛି ପ୍ରଥମ ଜେଲଯିବା ଅନୁଭୂତି । ଡିସେମ୍ବର ୨୫ ତାରିଖରେ ଯୁବରାଜ କଲିକତା ପହଞ୍ଚିବା ସମୟରେ କଲିକତାର ସବୁ କୋଠା ଉପରେ କଳାପତାକା ଉଡୁଥିଲା ଓ କଲିକତା ମହାନଗରୀରେ ବନ୍ଦ ପାଳିତ ହୋଇଥିଲା । ୧୯୨୨ ମସିହାରେ ସେ ଜେଲ୍‌ରୁ ଖଲାସ ହେଲେ । ୧୯୨୧ ମସିହାରୁ ୧୯୪୧ ମସିହା ପର୍ଯ୍ୟନ୍ତ ୨୦ ବର୍ଷ ଭିତରେ ସୁଭାଷ ଚନ୍ଦ୍ର ବୋଷଙ୍କୁ ୧୧ ଥର ଜେଲଦଣ୍ଡ ଭୋଗିବାକୁ ପଡ଼ିଥିଲା ।

୧୯୨୧ ମସିହାରେ ଗାନ୍ଧିଜୀ କଂଗ୍ରେସପାଇଁ ଯେଉଁ ସମ୍ବିଧାନ ପ୍ରସ୍ତୁତ କରିଥିଲେ ସେଥିରେ କଂଗ୍ରେସ ଏକ ଗଣ ଅନୁଷ୍ଠାନରେ ପରିଣତ ହୋଇଥିଲା ଓ ଜାତୀୟ ସଂଗ୍ରାମର ଆଭିମୁଖ୍ୟରେ ପରିବର୍ତ୍ତନ ଆସିଥିଲା । ତ୍ରିରଂଗା ପତାକାକୁ ଜାତୀୟ ପତାକାର ମାନ୍ୟତା ପ୍ରଦାନ କରାଯାଇଥିଲା । କଂଗ୍ରେସକୁ ଗଣ ଆନ୍ଦୋଳନରେ ପରିଣତ କରିବାରେ ସୁଭାଷଚନ୍ଦ୍ରଙ୍କର ଲେଖାଗୁଡ଼ିକ 'ବାଂଗଲାର କଥା', 'ଆତ୍ମଶକ୍ତି' ଓ 'ଫରୱାର୍ଡ଼'ରେ ପ୍ରକାଶିତ ହୋଇ ସେତେବେଳେ ବଂଗବାସୀଙ୍କଦ୍ୱାରା ଆଦୃତ ହୋଇଥିଲା । ଅସହଯୋଗ ଆନ୍ଦୋଳନ ଚାଲିଥିବା ସମୟରେ ୧୯୨୨ ମସିହା ଫେବୃଆରି ମାସ ୫ ତାରିଖରେ ଉତ୍ତରପ୍ରଦେଶର ଗୋରଖପୁର ଜିଲ୍ଲାର ଚୌରିଚୌରା ଗ୍ରାମଠାରେ କେତେକ କଂଗ୍ରେସ କର୍ମୀ, ପୋଲିସ କେତେକ କୃଷକଙ୍କ ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ଉପରକୁ ଗୁଳି ଚଳାଇବାରୁ, ହିଂସାତ୍ମକ ପନ୍ଥା ଗ୍ରହଣ କରି ଏକ ପୋଲିସ ଥାନା ପୋଡ଼ିଦେବାରୁ ୨୧ ଜଣ ପୋଲିସ୍ କର୍ମୀ ମୃତ୍ୟୁବରଣ କରିଥିଲେ । ସତ୍ୟାଗ୍ରହୀଙ୍କ ଏହି ହିଂସାତ୍ମକ କାର୍ଯ୍ୟଯୋଗୁଁ ମହାତ୍ମା ଗାନ୍ଧି ଅସହଯୋଗ ଆନ୍ଦୋଳନକୁ ହଠାତ୍ ବନ୍ଦ କରିଦେଲେ । ୧୯୨୨ ମସିହାରେ ବିହାରର ଗୟା ସହରରେ ଜାତୀୟ କଂଗ୍ରେସର ଅଧିବେଶନ ଚିତ୍ତରଂଜନ ଦାସଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ବ୍ୟବସ୍ଥାପକ ସଭାରେ କଂଗ୍ରେସ ଅଂଶଗ୍ରହଣ କରିବା ସଂପର୍କରେ ସେଠାରେ ଆଲୋଚନା ହୋଇଥିଲା । ଗାନ୍ଧିଜୀ

ବ୍ୟବସ୍ଥାପକ ସଭା ବର୍ଜନ କରିବାକୁ ଆଗରୁ ନିଷ୍ପତ୍ତି ନେଇଥିଲେ ଏବଂ ତାକୁ ଅପରିବର୍ତ୍ତିତ ରଖିବାକୁ ସେଠାରେ ଶ୍ରୀ ରାଜଗୋପାଳଚାରୀ ପ୍ରସ୍ତାବ ଆଣିଲେ ଏବଂ ତାହା ବହୁମତରେ ଗୃହୀତ ହୋଇଥିଲା । ଚିତ୍ତରଂଜନ ଦାସ ଏଭଳି ନିଷ୍ପତ୍ତିର ପ୍ରତିବାଦ କରି ଜାତୀୟ କଂଗ୍ରେସର ସଭାପତି ପଦରୁ ଇସ୍ତଫା ପ୍ରଦାନ କରିଥିଲେ । ମୋତିଲାଲ ନେହେରୁ, ବିଠଲ ଭାଇ ପଟେଲ, ପଣ୍ଡିତ ମଦନ ମୋହନ ମାଲବ୍ୟଙ୍କ ନେତୃତ୍ୱରେ କଂଗ୍ରେସ ଭିତରେ 'ସ୍ୱରାଜ୍ୟ' ଦଳ ନାମକ ଏକ ନୂତନ ଦଳ ପ୍ରତିଷ୍ଠା ହେଲା । ସେହି ଦଳ ବିଧାନସଭା ନିର୍ବାଚନରେ ଲଢ଼ିବାକୁ ସ୍ଥିର କଲେ ।

ଓଡ଼ିଶାରେ କାରାଗାରରେ ଥାଇ ସତ୍ୟବାଦୀର ସାଧକ ନେତାମାନେ ସ୍ୱରାଜ୍ୟ ଦଳରେ ଯୋଗ ଦେବାର ସ୍ଥିରକଲେ । ୧୯୨୩ରେ କାରାମୁକ୍ତ ହୋଇ ପଣ୍ଡିତ ନୀଳକଣ୍ଠ ଦାସ ସ୍ୱରାଜ୍ୟ ଦଳରେ ଯୋଗ ଦେଇ ସେହି ଦଳ ପକ୍ଷରୁ ଓଡ଼ିଶା ଡିଭିଜନରୁ ନିର୍ବାଚନ ଲଢ଼ି କେନ୍ଦ୍ର ଆସେମ୍ବ୍ଲି ବା ବଡ଼ଲାଟ ସଭାକୁ ନିର୍ବାଚିତ ହେଲେ । କେନ୍ଦ୍ର ଆସେମ୍ବ୍ଲିର ସ୍ୱରାଜ୍ୟ ଦଳର ସଦସ୍ୟମାନେ ପଣ୍ଡିତ ମୋତିଲାଲ ନେହେରୁଙ୍କୁ ନେତା ଓ ନୀଳକଣ୍ଠଙ୍କୁ ସେ ଦଳର ସାଧାରଣ ସଂପାଦକ ଭାବରେ ନିର୍ବାଚିତ କଲେ ।

ସ୍ୱରାଜ୍ୟ ଦଳ, କେନ୍ଦ୍ର ଆସେମ୍ବ୍ଲିରେ ବିରୋଧୀ ଦଳର ଭୂମିକା ନେଇ ୧୯୨୪-୧୯୨୭ ତିନି ବର୍ଷ କାଳ କ୍ରମାଗତ ଭାବେ ସରକାରୀ ବଜେଟ ଗୃହୀତ ହେବାରେ ବାଧା ସୃଷ୍ଟି କରି ସରକାରଙ୍କୁ ଅଡୁଆରେ ପକାଇଥିଲେ । ସୁଭାଷ ବିଧାନ ସଭା ବାହାରେ ସେହି ସ୍ୱରାଜ୍ୟ ଦଳର ପ୍ରଧାନ କାର୍‌ପଟଦାର୍ କାର୍ଯ୍ୟ କରୁଥିଲେ । ସେ ମଧ୍ୟପ୍ରଦେଶ ଓ ବଙ୍ଗଳାରେ ସ୍ୱରାଜ୍ୟ ଦଳ ସାହାଯ୍ୟରେ ପ୍ରଦେଶମାନଙ୍କର ସରକାରୀ କଳକୁ ଏକ ପ୍ରକାର ଅଚଳ କରିଦେଇଥିଲେ ।

କେନ୍ଦ୍ର ବିଧାନ ସଭାରେ ପଣ୍ଡିତ ନୀଳକଣ୍ଠ ତାଙ୍କ ପାଣ୍ଡିତ୍ୟ ଓ ବାଗ୍ମୀତା ଫଳରେ ଏକାଧାରରେ ଆଠ ଦଶ ଘଣ୍ଟା ଭାଷଣ ଦେଇ ସରକାରୀ ବିଲ ସବୁର ବିରୋଧ କରି ସୁନାମ ଅର୍ଜନ କରିଥିଲେ । ୧୯୨୭ରେ ବିଚ୍ଛିନ୍ନାଞ୍ଚଳ ଓଡ଼ିଶାକୁ ଏକତ୍ରିତ କରିବା ସଙ୍ଗେ ସଙ୍ଗେ ଏହାକୁ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଦିଆଯିବାପାଇଁ ଦୃଢ଼ ଯୁକ୍ତି ଉପସ୍ଥାପନ କରିଥିଲେ ।

ସେତେବେଳେ ଜାତୀୟ କଂଗ୍ରେସ ନିଷ୍ପତ୍ତି ଗ୍ରହଣ କଲା ଯେ କଂଗ୍ରେସ କର୍ମୀମାନେ ବ୍ୟବସ୍ଥାପକ ସଭା ଓ ମ୍ୟୁନିସିପାଲିଟି ପ୍ରଭୃତି ନିର୍ବାଚନ ଲଢ଼ିପାରିବେ ଏବଂ ଶାସନ ଭିତରେ ରହି ଲୋକଙ୍କର ହିତପାଇଁ କାର୍ଯ୍ୟ କରିବେ । ସେହିବର୍ଷ କଲିକତା କର୍ପୋରେସନର ନିର୍ବାଚନ ହେଲା । କଂଗ୍ରେସ କର୍ମୀମାନେ ନିର୍ବାଚନରେ ଜୟଯୁକ୍ତ ହେଲେ । ଦେଶବନ୍ଧୁ ଚିତ୍ତରଂଜନ ଦାସ କଲିକତା କର୍ପୋରେସନର ମେୟର ଭାବେ ଦାୟିତ୍ୱ ଗ୍ରହଣ କଲେ ଓ ସୁଭାଷ ଚନ୍ଦ୍ର ବୋଷ କର୍ପୋରେସନର ଚିଫ୍ ଏକ୍‌ଜିକ୍ୟୁଟିଭ୍ ଭାବରେ କାର୍ଯ୍ୟ କଲେ ।

## ମାଣ୍ଡାଲେ ଜେଲରେ ଜୀବନ

ଇଂରେଜ ସରକାରଙ୍କ ବିରୁଦ୍ଧରେ ବଂଗଳାର ଯୁବକମାନେ ପ୍ରଥମରୁ ହିଁ ହିଂସାତ୍ମକ ବିଦ୍ରୋହ କରୁଥିଲେ । ସୁଭାଷ ଚନ୍ଦ୍ର ବୋଷ ଏହି ବିଦ୍ରୋହୀମାନଙ୍କ ପ୍ରତି ସହାନୁଭୂତିଶୀଳ ରହିଥିଲେ ଏବଂ ସେମାନେ କିଭଳି କଂଗ୍ରେସଦ୍ୱାରା ହେଉଥିବା ଜାତୀୟ ଆନ୍ଦୋଳନରେ ଯୋଗ ଦିଅନ୍ତୁ ସେଥିପାଇଁ ଚେଷ୍ଟିତ ଥିଲେ । ସୁଭାଷଙ୍କର ସମସ୍ତ କାର୍ଯ୍ୟକୁ ଦେଶବନ୍ଧୁ ଚିତ୍ତରଂଜନ ସମର୍ଥନ କରୁଥିଲେ । କୌଣସି ନିର୍ଦ୍ଦିଷ୍ଟ କାରଣ ନ ଥାଇ ସୁଭାଷ ଚନ୍ଦ୍ର ବୋଷଙ୍କୁ ୧୯୨୪ ମସିହା ଅକ୍ଟୋବର ୨୪ ତାରିଖରେ ସରକାର ବନ୍ଦୀ କରି ପ୍ରଥମେ ଆଲିପୁର ଜେଲରେ ରଖିଲେ ଏବଂ ପରେ ୧୯୨୫ ମସିହା ଜାନୁଆରି ୨୫ ତାରିଖ ଦିନ ତାଙ୍କୁ ବର୍ମାର ମାଣ୍ଡାଲେ ଜେଲଖାନାକୁ ସ୍ଥାନାନ୍ତର କରିଦେଇଥିଲେ । ମାଣ୍ଡାଲେ ଜେଲଖାନାଟିର ଘରଗୁଡ଼ିକ କାଠରେ ତିଆରି । ବର୍ଷା ଓ ଶୀତ ଋତୁରେ ସେଠାରେ ବନ୍ଦୀମାନେ ଅସହ୍ୟ ଯନ୍ତ୍ରଣା ଭୋଗ କରନ୍ତି । ସେଠାରେ ରହିବା ସମୟରେ ସୁଭାଷଙ୍କ ସ୍ୱାସ୍ଥ୍ୟ ବିଗିଡ଼ି ଯାଇଥିଲା ।

ମାଣ୍ଡାଲେ ଜେଲରେ ଥିବାବେଳେ ସୁଭାଷ ବର୍ମାର ଇତିହାସ, ସଂସ୍କୃତି ବିଷୟରେ ଗଭୀର ଅଧ୍ୟୟନ କରିଥିଲେ । ବର୍ମାର ଭାଷା ଶିଖିଯାଇ ସେହି ଭାଷାରେ କଥାବାର୍ତ୍ତା କରୁଥିଲେ । ସୁଭାଷ ଏହି ଭାଷା ଶିଖିଥିବାରୁ ପରବର୍ତ୍ତୀ କାଳରେ ସିଂଗାପୁର-ବର୍ମା ଅଞ୍ଚଳରେ ରହି ଆଜାଦ୍-ହିନ୍ଦ୍-ଫୌଜର ପରିଚାଳନା ଖୁବ୍ ସୁବିଧାରେ କରିପାରିଥିଲେ । ମାଣ୍ଡାଲେ ଜେଲ୍ ଭିତରେ ଥିଲାବେଳେ ସେ ପିତାମାତା ଓ ବନ୍ଧୁମାନଙ୍କୁ ବରାବର ଚିଠି ଲେଖୁଥିଲେ । ଓଡ଼ିଶାର ନେତା ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପାଖକୁ ମଧ୍ୟ ସେ ଚିଠି ଲେଖୁଥିଲେ । ଗୋପବନ୍ଧୁ ପ୍ରଥମେ ତାଙ୍କୁ ଚିଠି ଲେଖି ଓଡ଼ିଶାର ବିଭିନ୍ନ ସମସ୍ୟା ସଂପର୍କରେ ଜଣାଉଥିଲେ । ଗୋପବନ୍ଧୁଙ୍କ ଚିଠିର ଉତ୍ତର ଦେଇ ସୁଭାଷଚନ୍ଦ୍ର ଓଡ଼ିଆ ଭାଷା ଶିଖିବା ଓ ପଢ଼ିବାପାଇଁ ତ୍ରିଭାଷୀ, ଓଡ଼ିଆ ବ୍ୟାକରଣ ଓ ଓଡ଼ିଆ ଅଭିଧାନ ବହି ମଗାଇଥିଲେ । ଗୋପବନ୍ଧୁ ସେହି ବହି ସବୁ ମାଣ୍ଡାଲେ ଜେଲକୁ ପଠାଇଥିଲେ । ବହିଗୁଡ଼ିକ ପାଇ ସେ ଖୁବ୍ ଖୁସୀ ହୋଇଥିଲେ । ବନ୍ୟାଯୋଗୁଁ ପୁରୀ ଜିଲ୍ଲାର ଲୋକେ କଷ୍ଟ ଭୋଗୁଥିବା ଶୁଣି ସେ ଦୁଃଖିତ ହୋଇଥିଲେ । ଜନ୍ମଭୂମି ଓଡ଼ିଶାର କଳା, ସଂସ୍କୃତି, ଇତିହାସ କଥା ତାଙ୍କର ସବୁ ମନେ ଥିଲା ଏବଂ ସେ ଓଡ଼ିଶାବାସୀଙ୍କ ସୁଖଦୁଃଖରେ ନିଜକୁ ଜଡ଼ିତ କରିବାକୁ ଇଚ୍ଛା କରିଥିଲେ ।

ପଣ୍ଡିତ ଗୋପବନ୍ଧୁ ଦାସଙ୍କର ପ୍ରଥମ ଚିଠି ପାଇ ଓଡ଼ିଶାବାସୀ କିଭଳି ବନ୍ୟାଦ୍ୱାରା ହନ୍ତସନ୍ତ ହେଉଥିଲେ ସେଥିପାଇଁ ବିବ୍ରତ ହୋଇ ସୁଭାଷ ଲେଖିଥିଲେ-

ପ୍ରିୟ ଗୋପବନ୍ଧୁ ବାବୁ,

ଆପଣଙ୍କର ତା୨୬.୯.୧୯୨୫ ରିଖର ଚିଠି ପାଇ ମୁଁ ଖୁବ୍ ଆନନ୍ଦିତ ହେଲି । ସେ ଓଡ଼ିଆ ପୁସ୍ତକଗୁଡ଼ିକ ମୋ ନିକଟରେ ରଖିବାପାଇଁ ମୁଁ ବହୁ ଦିନରୁ ଅପେକ୍ଷା କରି ବସିଛି । ଏ ପର୍ଯ୍ୟନ୍ତ ସେଗୁଡ଼ିକ ମୋ ପାଖରେ ପହଞ୍ଚି ନାହିଁ । ସେଥିପାଇଁ ମୁଁ ବଡ଼ ବ୍ୟାକୁଳ । ଏହି ଦୁର୍ଦ୍ଦିନରେ ଏହି କାରାକକ୍ଷରେ, ଆପଣଙ୍କ ଆଶୀର୍ବାଦ ତଥା ଆଶା ଓ ସାହସର ବାଣୀ ପାଇ ମୁଁ ଯେ କେତେ ଆନନ୍ଦିତ ତାହା ବର୍ଣ୍ଣନା କରିପାରିବି ନାହିଁ । ମାତ୍ର ଏଠାରେ ମୋର ସ୍ୱାସ୍ଥ୍ୟ ଭଲ ରହୁନାହିଁ ।

ଓଡ଼ିଶାର ଗଡ଼ଜାତ ମିଶ୍ରଣ ବିଷୟରେ ଯାହା ସବୁ ଘଟୁଛି ସେଥିପ୍ରତି ମୁଁ ଅବହିତ ଅଛି । ମୋର ବିଶ୍ୱାସ ଯେ ଲର୍ଡ ରିଡ଼ିଙ୍ଗ (ବଡ଼ଲାଟ) ବିଦାୟ ନେବା ପୂର୍ବରୁ ଓଡ଼ିଶା ଲୋକଙ୍କ ସପକ୍ଷରେ କିଛି ଘୋଷଣା କରିବେ ।

ପୁରୀ ଜିଲ୍ଲାର ଭୟାବହ ଦୁର୍ଗତି (ଡଭାର ଦୁର୍ଭିକ୍ଷ) ବିଷୟରେ ଯେଉଁ ବିବରଣୀ ମିଳିଛି ତାହା ଅତ୍ୟନ୍ତ ମର୍ମନ୍ତୁଦ । ମୁଁ ଚାହେଁ, ଏ ପରିସ୍ଥିତିରେ ବଙ୍ଗଳା ସାହାଯ୍ୟ ସମିତି ଓଡ଼ିଶାକୁ କିଛି ସାହାଯ୍ୟ କରିବା ଉଚିତ । ମୁଁ ଜାଣିଛି ଯେ ଏହି ସମିତି ଆନୁକୂଲ୍ୟରେ ଏକ ପାଣ୍ଠି ଗଚ୍ଛିତ ଅଛି, ଯହିଁରୁ କି ବର୍ତ୍ତମାନ ଖଦୀକାମ ଚାଲିଛି । ହୁଏତ ବାବୁ ସତୀଶ ଚନ୍ଦ୍ର ଦାସଗୁପ୍ତ (ଡକ୍ଟର ପି. ସି. ରାଏଙ୍କ ସେକ୍ରେଟାରୀ) ଓଡ଼ିଶାକୁ ଏ ପ୍ରକାର ସାହାଯ୍ୟ ଦେବା ପ୍ରସ୍ତାବର ବିରୋଧ କରିପାରନ୍ତି, ମାତ୍ର ସାଧାରଣ ଜନମତ ତଥା ସମିତିର ଅଧିକାଂଶ ସଭ୍ୟ ଏ ପ୍ରକାର ପ୍ରସ୍ତାବକୁ ବିଶେଷ ଭାବେ ସମର୍ଥନ କରିବେ । ସମିତି ବିଷୟରେ ଭଲ ରୂପେ ଜାଣିଥିବାରୁ ମୁଁ ଦୃଢ଼ ବିଶ୍ୱାସ ସହିତ ଏହା କହୁଛି ।

କୃଷି ଦୃଷ୍ଟିରୁ ଓଡ଼ିଶା ଦରିଦ୍ର ହୋଇଥିବାରୁ ଶିଳ୍ପ ଉନ୍ନୟନ ବ୍ୟତୀତ ଓଡ଼ିଶା ତା'ର ସମସ୍ତ ସନ୍ତାନଙ୍କୁ କାମ ତଥା ଖାଦ୍ୟ ଯୋଗାଇବା ସମ୍ଭବ ହେଉ ନାହିଁ । ବହୁ ଓଡ଼ିଆ ରାଜ୍ୟ ଛାଡ଼ି ଯେ ସୁଦୂର ସ୍ଥାନମାନଙ୍କୁ ଯାଉଛନ୍ତି ତହିଁରୁ ସମଗ୍ର ଜନସାଧାରଣଙ୍କ ନିମନ୍ତେ ଉପାଦାନ ଯୋଗାଇବା ଦିଗରେ ଓଡ଼ିଶା ସମ୍ବଳହୀନ ବୋଲି ପରିଷ୍କାର ପ୍ରମାଣ ମିଳୁଛି ।

ବର୍ତ୍ତମାନ ପରିସ୍ଥିତିରେ ସ୍ଥାନାନ୍ତରିତ ହେବା ଫଳରେ ସେମାନଙ୍କର ନୈତିକ ସ୍ଖଳନ ଘଟୁଛି । କାରଣ ଲୋକେ ଅନ୍ୟ ସ୍ଥାନକୁ ଯିବାଦ୍ୱାରା ଯୌଥ ପରିବାର ଭାଙ୍ଗି ପଡୁଛି ଓ ଯେଉଁମାନେ ବାହାରକୁ ଯାଉଛନ୍ତି, ଅସ୍ୱାସ୍ଥ୍ୟକର ପରିବେଶ ତଥା ଅପରିଚିତ ସ୍ଥାନରେ ସେମାନଙ୍କୁ ରହିବାକୁ ପଡୁଛି । ସେଭଳି ସ୍ଥାନରେ ଆଦୌ ସାମାଜିକ ନିୟନ୍ତ୍ରଣ ନାହିଁ । କଲିକତା ଅବସ୍ଥା ଦେଖି ମୁଁ ଏହା ଅନୁଭବ କରିଛି ।

ମୋର ଆଶା ଯେ ଆପଣ ନିକଟ ଅତୀତରେ କଲିକତାରେ ଶ୍ରମିକମାନଙ୍କର ଅବସ୍ଥାର ଉନ୍ନତିପାଇଁ ଯେଉଁ କାର୍ଯ୍ୟ କରୁଥିଲେ, ତାହା ପୁଣି ଚଳାଇବେ ।

ଆପଣଙ୍କ ବିଦ୍ୟାଳୟ ଅବସ୍ଥା ଶୁଣି ବିଶେଷ ଦୁଃଖିତ । ମୁଁ ଭାବୁଛି ଓଡ଼ିଶା ତଥା ବଙ୍ଗଳା ସମ୍ମୁଖରେ ଦୁଇଟି ବଡ଼ ସମସ୍ୟା ରହିଛି । ପ୍ରଥମଟି ହେଉଛି ନଦୀ ସମସ୍ୟା ଓ ଦ୍ୱିତୀୟଟି ସମବାୟ ସୂତ୍ରରେ ଉନ୍ନୟନ । ଏ ଦୁଇଟି ପ୍ରଦେଶରେ ଆମେ ନଦୀର ଅନୁକମ୍ପା ଉପରେ ନିର୍ଭର କରି ରହିଛୁ । ମାତ୍ର ନଦୀର ସୃଷ୍ଟି ଓ ବିକାଶ ସମ୍ପର୍କରେ ଆମର ଜ୍ଞାନ ଖୁବ୍ ନଗଣ୍ୟ । ନଦୀ ସମ୍ପର୍କରେ ଆମ ଇଞ୍ଜିନିୟରମାନଙ୍କ ଜ୍ଞାନ ମଧ୍ୟ ସ୍ୱଳ୍ପ । ସାଧାରଣ ସେବା କ୍ଷେତ୍ରରେ କାର୍ଯ୍ୟ କରୁଥିବା ବ୍ୟକ୍ତିଙ୍କର ଏ ସମ୍ପର୍କରେ ଜ୍ଞାନ ଆହୁରି କମ୍ । ମୋର ବିଶ୍ୱାସ ଯେ ନଦୀମାନଙ୍କୁ ନିୟନ୍ତ୍ରଣ କଲା ଭଳି ଆମର ଜ୍ଞାନ ହେବା ପର୍ଯ୍ୟନ୍ତ ଆମ୍ଭେମାନେ ଏହିଭଳି ଦୁରବସ୍ଥାରେ ରହିଥିବା ।

ଆପଣଙ୍କର ସ୍ନେହାଧୀନ
ସୁଭାଷ ଚନ୍ଦ୍ର ବୋଷ

ଅନ୍ୟ ଏକ ଚିଠିରୁ ସୁଭାଷଙ୍କର ଗୋପବନ୍ଧୁଙ୍କ ସହିତ କେତେ ଘନିଷ୍ଠତା ଥିଲା ତାହା ଜଣାପଡ଼େ । ଚିଠିଟି ଏହିପରି-

**ପ୍ରିୟ ଗୋପବନ୍ଧୁ ବାବୁ,**

ଆପଣଙ୍କର ଦୁଇଟିଯାକ ପାର୍ଶଲ ଏ ପର୍ଯ୍ୟନ୍ତ ମୁଁ ପାଇନାହିଁ । ଜେଲ ଅଫିସ କର୍ତ୍ତୃପକ୍ଷ କହନ୍ତି ଯେ ଏଭଳି କୌଣସି ପାର୍ଶଲ ସେ ପାଇ ନାହାନ୍ତି । କଲିକତାର କୌଣସି ପୁସ୍ତକ ଦୋକାନରୁ ମୁଁ ସିଧାସଳଖ କିଛି ଓଡ଼ିଆ ପୁସ୍ତକ ମଗାଇବାକୁ ଚିନ୍ତା କରୁଛି । କୌଣସି ଭଲ ଓଡ଼ିଆ-ବଙ୍ଗଳା କିମ୍ବା ଓଡ଼ିଆ-ଇଂରାଜୀ ଅଭିଧାନ ଲେଖକଙ୍କ ନାମ, ଏହିଭଳି ଏକ ଅଭିଧାନର ନାମ, ଇଂରାଜୀ, ବଙ୍ଗଳା, ଓଡ଼ିଆରେ ଲିଖିତ କୌଣସି 'ଓଡ଼ିଆ ସାହିତ୍ୟର ଇତିହାସ' ଏବଂ କଲିକତା, କଟକ କିମ୍ବା ପୁରୀର କେତେକ ଭଲ ବହି ଦୋକାନର ଠିକଣା ମୋତେ ଜଣାଇବେ ।

ଓଡ଼ିଶାର ବନ୍ୟା ସମ୍ପର୍କୀୟ ସମ୍ବାଦ ଶୁଣି ମୁଁ ବିଶେଷ ଦୁଃଖିତ । 'ବିପଦ ଓ ଦୁର୍ଭାଗ୍ୟ' ଯେ ଏକୁଟିଆ ଆସେ ନାହିଁ, ତାହା ଏଥିରୁ ଜଣାଯାଉଛି । କ୍ଷୟକ୍ଷତିର ପରିମାଣ ଓ କି ପ୍ରକାର ସାହାଯ୍ୟ ସମ୍ଭବ ମୋତେ ଜଣାଇବେ ।

ସିଲହଟକୁ ଯେତେବେଳେ ବଙ୍ଗଳାରେ ମିଶ୍ରଣ କରାଗଲା, ସେତେବେଳେ ଗଞ୍ଜାମ ଅଞ୍ଚଳ ଓଡ଼ିଶାକୁ ଫେରାଇ ନ ଦେବାର କୌଣସି କାରଣ ନାହିଁ । ଶୀଘ୍ର ହେଉ ବା ବିଳମ୍ବରେ

ହେଉ ଏ ମିଶ୍ରଣ ନିଶ୍ଚୟ ଘଟିବ । ମାନ୍ଦ୍ରାସ ସରକାର ଏହାର ବିରୋଧ କରି ଘଟଣାକୁ କେବଳ ବିଳମ୍ବ କରୁଛନ୍ତି ।

ଡକ୍ଟର ବାଳକୃଷ୍ଣ ମିଶ୍ର ଓ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ଅକାଳ ବିୟୋଗରେ ଆପଣ କିପରି ବ୍ୟଥିତ ହୋଇଥିବେ ତାହା ମୁଁ କଳ୍ପନା କରିପାରୁଛି । ମୁଁ ବା କି ସାନ୍ତ୍ୱନା ଦେବି ? ଏ ବିଚ୍ଛେଦ ସହ୍ୟ କରିବାକୁ ପରମେଶ୍ୱର ଆପଣଙ୍କୁ ଶକ୍ତି ଦିଅନ୍ତୁ- ଏହା ହିଁ କାମନା । ଈଶ୍ୱର ଯାହାକୁ ସ୍ନେହ କରନ୍ତି ସେମାନେ ଶୀଘ୍ର ମୃତ୍ୟୁମୁଖରେ ପଡ଼ନ୍ତି ।

ମୋର ଆଶା ପୁରୀ ଜିଲ୍ଲାର ଜଳ ନିଷ୍କାସନପାଇଁ କିଛି କାର୍ଯ୍ୟ କରାଯିବ । କେବଳ ପ୍ରସ୍ତାବ ଧାର୍ଯ୍ୟ କରିଦେଲେ ଦୁଃଖ ଦୂର ହେବ ନାହିଁ ।

ଓଡ଼ିଆ ସାଧୁ ସନ୍ନ୍ୟାସୀଙ୍କ ଜୀବନୀ ଏବଂ ସେମାନଙ୍କ ସାଧନା ସଂକ୍ରାନ୍ତରେ ଯଦି କୌଣସି ପୁସ୍ତକ ଥାଏ, ତେବେ ମୋତେ ଦୟାକରି ଜଣାଇବେ ।

। ଇତି ।

ଆପଣଙ୍କର ସ୍ନେହାଧୀନ

ସୁଭାଷ ଚନ୍ଦ୍ର ବୋଷ

ସୁଭାଷ ଓଡ଼ିଶାର ପ୍ରତ୍ନତତ୍ତ୍ୱ ବିଭବ ଉପରେ ଗବେଷଣାରତ ଥିବା ପ୍ରଫେସର ନିର୍ମଳ ଚନ୍ଦ୍ର ବସୁଙ୍କୁ ସହିତ ମଧ୍ୟ ପତ୍ରାଳାପ କରୁଥିଲେ । ୧୯୨୬ ମସିହାରେ ସେ ମାଣ୍ଡାଲେ ଜେଲରୁ ଯେଉଁ ପତ୍ର ନିର୍ମଳ ବାବୁଙ୍କ ପାଖକୁ ଲେଖିଥିଲେ ତାହାର ନକଲ ଏଠାରେ ଦେବା ସମୀଚୀନ ହେବ ।

**ପ୍ରିୟ ନିର୍ମଳ ବାବୁ,**

ଆପଣ ମୋ ଠାରୁ କୋଣାର୍କ ବିଷୟ ଶୁଣି ସେଠାକୁ ଯାଇ ଯେଉଁ ପୁସ୍ତକ ରଚନା କରି ମୋ ନିକଟକୁ ପଠାଇଛନ୍ତି, ତାହା ମୁଁ ପଢ଼ିଛି । ଆପଣଙ୍କ ପରିଶ୍ରମ ପ୍ରତି ପୃଷ୍ଠାରେ ପ୍ରତିଫଳିତ ହୋଇଛି । ଆପଣଙ୍କ ଭଳି ଜଣେ ବ୍ୟକ୍ତି ଓଡ଼ିଶାର ଶିଳ୍ପ ସଂସ୍କୃତି ପ୍ରତି ଆକୃଷ୍ଟ ହୋଇଥିବା ବିଷୟ ମୋ ପକ୍ଷରେ କମ୍ ଆନନ୍ଦର ବିଷୟ ନୁହେଁ, କାରଣ ମୋର ଜନ୍ମ ଓଡ଼ିଶା ଭୂମିରେ ଓ ମୁଁ ଓଡ଼ିଶାକୁ ଅତ୍ୟନ୍ତ ଭଲ ପାଏ ।

ଆପଣଙ୍କର 'ଓଡ଼ିଶାର ଶିଳ୍ପ ଶାସ୍ତ୍ର' ବହି ଖଣ୍ଡିକ ଦେଖି ମଧ୍ୟ ଆନନ୍ଦ ଲାଭ କରିଛି । ଏହାସବୁ ଲେଖିବାପାଇଁ ଆପଣଙ୍କୁ ବହୁ ଓଡ଼ିଆ ପୋଥିପତ୍ରର ସଂଗ୍ରହ ଓ ଅଧ୍ୟୟନ କରିବାକୁ ପଡ଼ିଥିବ । ସେ ସବୁ ପ୍ରାଚୀନ ଗ୍ରନ୍ଥଗୁଡ଼ିକ ପୁନରୁଦ୍ଧାର କରିପାରିଲେ ଓଡ଼ିଶା ତଥା ବଙ୍ଗ ଦେଶ ଉଭୟର ଉପକାର ହେବ ।

ଓଡ଼ିଶାର ଲୁପ୍ତ ଗୌରବ ଉଦ୍ଧାର କରାଯାଇ ପାରିଲେ କେବଳ ଯେ ଉକ୍ତ ଭୂମିର ସେବା କରାଯାଇପାରିବ, ତାହା ନୁହେ- ବଙ୍ଗଦେଶ ଓ ସମଗ୍ର ଭାରତ ବର୍ଷର ମଧ୍ୟ ସେବା କରାଯାଇପାରିବ ।

ଆପଣ ଯେଉଁଭଳି ଭାବରେ ଓଡ଼ିଶାର ଶିଳ୍ପ ଓ ଶିଳ୍ପଶାସ୍ତ୍ରର ଅଧ୍ୟୟନ କରିପାରିଛନ୍ତି, ମୋର ମଧ୍ୟ ସେହିଭଳି ଅଧ୍ୟୟନର ଇଚ୍ଛା ହୁଏ, କିନ୍ତୁ ତା'ର ଉପାୟ ନାହିଁ । ବସ୍ତୁତଃ ଓଡ଼ିଶାର ଶିଳ୍ପ ମୋର ଅତି ଆଦରର ଜିନିଷ । ଏ ବହିରୁ ଭାରତବାସୀଙ୍କୁ ଶିଳ୍ପ ସଂକ୍ରାନ୍ତ ବହୁ ବିଷୟ ଶିକ୍ଷା କରିବାର ଉପାଦାନ ମିଳିପାରିବ । ମୋର ସମ୍ଭାଷଣ ଗ୍ରହଣ କରିବେ ।

। ଇତି ।

ଭବଦୀୟ

ସୁଭାଷ ଚନ୍ଦ୍ର ବୋଷ

ସୁଭାଷ ଅନ୍ୟ ରାଜବନ୍ଦୀମାନଙ୍କ ସହିତ ମାଣ୍ଡାଲେ ଜେଲରେ ଥିଲାବେଳେ ଦୁର୍ଗାପୂଜା କରିବାକୁ ଜେଲକର୍ତ୍ତୃପକ୍ଷଙ୍କ ଅନୁମତି ଚାହିଁଥିଲେ । କିନ୍ତୁ ତାଙ୍କୁ ଦୁର୍ଗାପୂଜା କରିବାକୁ ଅନୁମତି ମିଳିଲା ନାହିଁ । ସୁଭାଷ ତେଣୁ ଅନନ୍ୟୋପାୟ ହୋଇ ଅନଶନ ଓ ଧର୍ମଘଟ ଆରମ୍ଭ କରିଦେଲେ ଏବଂ ଅନ୍ୟ ବନ୍ଦୀମାନେ ତାଙ୍କ ସହିତ ଯୋଗଦେଲେ । ପନ୍ଦର ଦିନ କାଳ ଅନଶନ କରିବା ପରେ ସରକାର ବିବ୍ରତ ହୋଇ ତାଙ୍କୁ ଜେଲ୍ ପରିସରରେ ଦୁର୍ଗାପୂଜା ଆୟୋଜନ କରିବାକୁ ଅନୁମତି ଦେଲେ । ଜେଲ୍‌ରେ ସମସ୍ତେ ମିଶି ଦୁର୍ଗାପୂଜା ନିଷ୍ଠାର ସହିତ ପାଳନ କରିଥିଲେ ।

ଜେଲ୍‌ର ଅସ୍ୱାସ୍ଥ୍ୟକର ପରିବେଶ ଓ ଦୀର୍ଘଦିନର ଅନଶନ ଫଳରେ ସୁଭାଷଙ୍କ ସ୍ୱାସ୍ଥ୍ୟାବସ୍ଥାରେ ଦ୍ରୁତ ଅବନତି ଘଟିଲା । ସୁଭାଷଙ୍କ ସ୍ୱାସ୍ଥ୍ୟ ପରୀକ୍ଷାପାଇଁ ଜେଲ୍ କର୍ତ୍ତୃପକ୍ଷ ତାଙ୍କୁ ରେଂଗୁନ୍ ନେଇଥିଲେ । ସେଠାକାର ଡାକ୍ତରମାନେ ସୁଭାଷ ବୋଷଙ୍କୁ ତୁରନ୍ତ ଖଲାସ କରିଦେବାକୁ ପରାମର୍ଶ ଦେଲେ । ସରକାର ତାଙ୍କୁ ଖଲାସ ନକରି ତତ୍କାଳୀନ ଯୁକ୍ତ ପ୍ରଦେଶର ଆଲମୋଡ଼ା ଜେଲ୍‌କୁ ସ୍ଥାନାନ୍ତର କଲେ । କିନ୍ତୁ ସୁଭାଷ ମାଣ୍ଡାଲେରୁ ଜଳପଥରେ ଡାଇମଣ୍ଡ ହାରବୋର ପହଞ୍ଚିବା ପରେ ତାଙ୍କର ପୁନର୍ବାର ସ୍ୱାସ୍ଥ୍ୟ ପରୀକ୍ଷା କରିବାର ଆବଶ୍ୟକତା ପଡ଼ିଲା ଏବଂ ସ୍ୱାସ୍ଥ୍ୟର ଅତ୍ୟନ୍ତ ଅବନତି ଘଟିବାରୁ କିଛିଦିନ ପରେ ୧୯୨୭ ମସିହା ମେ' ମାସରେ ସରକାର ତାଙ୍କୁ କାରାମୁକ୍ତ କରିଥିଲେ । ସୁଭାଷ ଚନ୍ଦ୍ର ବୋଷ ମାଣ୍ଡାଲେ ଜେଲ୍‌ରେ ଥିଲାବେଳେ ଦେଶବନ୍ଧୁ ଚିତ୍ତରଂଜନ ଦାସଙ୍କର ୧୯୨୫ ମସିହା ଜୁନ୍ ୧୬ ତାରିଖରେ ମୃତ୍ୟୁ ହୋଇଯାଇଥିଲା ।

## ବଂଗଳାରେ ବିଶେଷ ସାଫଲ୍ୟ

କାରାମୁକ୍ତ ହେବା ପରେ ସେ ଓଡ଼ିଶା ଆସି ରାଜ୍ୟର ବିଭିନ୍ନ ସମସ୍ୟା ସଂପର୍କରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସଂଗେ ଆଲୋଚନା କରିବାକୁ ମନସ୍ଥ କରିଥିଲେ । କିନ୍ତୁ ବିଭିନ୍ନ କାର୍ଯ୍ୟରେ ବିଶେଷକରି ବଂଗଳା କଂଗ୍ରେସର ସଭାପତି ହେବା ପରେ ଏତେ କାର୍ଯ୍ୟବ୍ୟସ୍ତ ରହିଲେ ଯେ ଓଡ଼ିଶା ଆସିବା ସମ୍ଭବପର ହୋଇନଥିଲା । ୧୯୨୮ ମସିହା ଜୁନ୍ ୧୭ ତାରିଖରେ ଗୋପବନ୍ଧୁ ଦାସ ମୃତ୍ୟୁବରଣ କଲେ । ତାଙ୍କ ତିରୋଧାନ ସମ୍ବାଦ ପାଇ ସୁଭାଷ ଅତ୍ୟନ୍ତ ମର୍ମାହତ ହୋଇ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ନିମ୍ନଲିଖିତ ବାର୍ତ୍ତାଟି ପଠାଇଥିଲେ ।

"ଗୋପବନ୍ଧୁଙ୍କ ତିରୋଧାନରେ ଓଡ଼ିଶା ଭାଗ୍ୟରେ ଯେଉଁ ବିଘାତ ଘଟିଗଲା ସେଥିରୁ ଉଦ୍ଧାର ପାଇବା ଅତ୍ୟନ୍ତ କଷ୍ଟକର । ପଣ୍ଡିତ ଗୋପବନ୍ଧୁ ଓଡ଼ିଶା ଜାତୀୟ ଆନ୍ଦୋଳନର ସୃଷ୍ଟିକର୍ତ୍ତା । ସରଳ ଭାବରେ ଚଳିବା ଓ ଉଚ୍ଚ ମହତ୍ ଚିନ୍ତା କରିବା- ଏହି ଆଦର୍ଶରେ ସେ ଜୀବନ ଯାପନ କରୁଥିଲେ । ଅସହଯୋଗ ଆନ୍ଦୋଳନ ପୂର୍ବରୁ ଓ ପରେ ମୁଁ ଅନେକ ଥର ପଣ୍ଡିତଜୀଙ୍କ ସହିତ ସାକ୍ଷାତ କରିଥିଲି ଏବଂ ତାଙ୍କ ପ୍ରତି ମୋର ଖୁବ୍ ଭକ୍ତି ଥିଲା, ଓଡ଼ିଶାରେ ମୋର ଜନ୍ମ ଓ ଲାଳିତ ପାଳିତ ହୋଇଥିବାଯୋଗୁ ଗୋପବନ୍ଧୁଙ୍କ ମୃତ୍ୟୁରେ ଜଣେ ଓଡ଼ିଆ ତାଙ୍କର ଅଭାବ ଯେପରି ତୀବ୍ର ଭାବରେ ଅନୁଭବ କରୁଥିବ, ମୁଁ ମଧ୍ୟ ସେହିପରି ଅନୁଭବ କରୁଅଛି ।

ମୋର ଏକାନ୍ତ ଅନୁରୋଧ, ଓଡ଼ିଶାର ଯୁବକବୃନ୍ଦ ଏହି ଦୁର୍ଦ୍ଦିନରେ କାର୍ଯ୍ୟକ୍ଷେତ୍ରକୁ ବାହାରି ପଡ଼ି ଗୋପବନ୍ଧୁଙ୍କ ପତାକା ଧରିରଖିବେ । ତେବେ ବୁଝିବାକୁ ହେବ ସେ ସ୍ୱର୍ଗୀୟ ମହାତ୍ମାଙ୍କ ଜୀବନର କାର୍ଯ୍ୟ ନିରର୍ଥକ ହୋଇନାହିଁ ।"

କଲିକତାରେ ପହଞ୍ଚିବା ପରେ ୧୯୨୭ ଅକ୍ଟୋବର ମାସରେ ସୁଭାଷ ବଂଗଳା କଂଗ୍ରେସର ସଭାପତି ଭାବରେ ନିର୍ବାଚିତ ହେଲେ । ଏହା ପରେ ସେ ଜାତୀୟ କଂଗ୍ରେସର ସଂଗଠନକୁ ସକ୍ରିୟ କରିବାକୁ ଲାଗିପଡ଼ିଲେ । ପ୍ରଥମେ ବଂଗଳାରେ ହିନ୍ଦୁ-ମୁସଲମାନ ସଂପ୍ରଦାୟର ଲୋକମାନଙ୍କ ମଧ୍ୟରେ ସୁସଂପର୍କ ପ୍ରତିଷ୍ଠା କରିବା ତାଙ୍କର ପ୍ରଧାନ କାର୍ଯ୍ୟ ହେଲା, ଯେଉଁଥିରେ କି ସେ ସଫଳତା ଲାଭ କରିପାରିଥିଲେ । ସୁଭାଷଙ୍କର କାର୍ଯ୍ୟକଳାପ ଇଂରେଜ ସରକାରଙ୍କୁ ଆତଙ୍କିତ କରିଥିଲା ।

୧୯୨୮ ମସିହା ଫେବ୍ରୁଆରି ମାସରେ ବ୍ରିଟିଶ ସରକାର 'ସାଇମନ କମିଶନ୍' ନିଯୁକ୍ତ କଲେ । ଏହି କମିଶନ୍ ଭାରତର ବିଭିନ୍ନ ସ୍ଥାନ ଗସ୍ତ କରି ଭାରତର ସାମ୍ବିଧାନିକ ସଂସ୍କାର ଉପରେ ଲୋକମାନଙ୍କଠାରୁ ମତାମତ ଗ୍ରହଣ କରି ଏକ ରିପୋର୍ଟ ଦେବାକୁ ନିଯୁକ୍ତ ହୋଇଥିଲେ । ଲର୍ଡ ଇରଉଇନ୍ ଏହି କମିଶନ୍‌ର ନିଯୁକ୍ତି ଘୋଷଣା କରିଥିଲେ । ପରିତାପର

ବିଷୟ କମିଶନରେ କୌଣସି ଭାରତୀୟ ସଦସ୍ୟ ନ ଥିଲେ । ତେଣୁ ଏହି କମିଶନ୍ ସହିତ ସଂପୂର୍ଣ୍ଣ ଅସହଯୋଗ କରିବାକୁ ଜାତୀୟ କଂଗ୍ରେସ ନିଷ୍ପତ୍ତି ଗ୍ରହଣ କରି ଏହି କମିଶନ୍ର ଗସ୍ତକୁ ବିରୋଧ କରିବାକୁ କଂଗ୍ରେସ କର୍ମୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ୧୯୨୮ ମସିହା ଫେବ୍ରୁଆରି ୩ ତାରିଖରେ ସାଇମନ୍ ସାହେବ ବମ୍ବେରେ ପହଞ୍ଚିବା ବେଳେ ସମଗ୍ର ଭାରତରେ ହରତାଳ ପାଳିତ ହୋଇଥିଲା । 'ସାଇମନ୍ ଫେରିଯାଅ' ବା 'Go Back Simon' ଧ୍ୱନିଦେଇ ସାଇମନ୍ଙ୍କୁ ସବୁଆଡ଼େ କଳାପତାକା ପ୍ରଦର୍ଶନ କରାଗଲା । ବଂଗଳାରେ ସୁଭାଷ ଚନ୍ଦ୍ର ବୋଷ ସାଇମନ୍ଙ୍କ ବିରୁଦ୍ଧରେ ହରତାଳ ସଂଗଠିତ କରି ଅଭୂତପୂର୍ବ ସଫଳତା ଲାଭ କରିଥିଲେ । ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ, ସାଇମନ୍ଙ୍କ ଗସ୍ତ ସମୟରେ ମାଡ୍ରାସ୍ ସହରରେ ଗୁଳି ଚାଲିଥିଲା । ଲକ୍ଷ୍ନୌରେ ପୋଲିସର ଲାଠି ମାଡ଼ରେ ଜବାହରଲାଲ ନେହେରୁ ଓ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ ଗୁରୁତର ଆଘାତପ୍ରାପ୍ତ ହୋଇଥିଲେ । ଲାହୋରଠାରେ ଲାଲା ଲଜପତ୍ ରାୟଙ୍କ ନେତୃତ୍ୱରେ ପରିଚାଳିତ ଏକ ବିରାଟ ଶୋଭାଯାତ୍ରାକୁ ଛତ୍ରଭଂଗ କରିବାକୁ ପୋଲିସ ଲାଠି ଚାଳନା କରିଥିଲା ଏବଂ ବୟୋବୃଦ୍ଧ ଲାଲା ଲଜପତ୍ ରାୟ ପୋଲିସ ଲାଠିମାଡ଼ରେ ଗୁରୁତର ଆହତ ହୋଇ ହସପିଟାଲ୍‌ରେ ଚିକିତ୍ସିତ ହେଉଥିବା ସମୟରେ ମୃତ୍ୟୁବରଣ କରିଥିଲେ । ସେହି ବର୍ଷ ସୁଭାଷ ପଣ୍ଡିତ ଜବାହରଲାଲ ନେହେରୁଙ୍କ ସାଂଗରେ ମିଶି ଭାରତ ସ୍ୱାଧୀନତା ସଂଘ (Indian Independence League) ଗଠନ କରିଥିଲେ ।

୧୯୨୮ ମସିହା ଡିସେମ୍ବର ମାସରେ କଲିକତା ସହରର ପାର୍କ ସର୍କସ ମଇଦାନରେ ଜାତୀୟ କଂଗ୍ରେସର ସାଧାରଣ ଅଧିବେଶନ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ନିଜର ସାଂଗଠନିକ ଶକ୍ତି ଓ ଯୁବ ସଂପ୍ରଦାୟର ଅପୂର୍ବ ଶୃଙ୍ଖଳା ପ୍ରଦର୍ଶନ କରି ସୁଭାଷ ବୋଷ ସର୍ବସାଧାରଣଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲେ । ତାଙ୍କର ବେଂଗଲ ଭଲେଣ୍ଟିଅର୍ସମାନେ ହାଓ୍ୱଡ଼ା ଷ୍ଟେସନରୁ ପାର୍କ ସର୍କସ୍ ମଇଦାନ ପର୍ଯ୍ୟନ୍ତ ଏକ ବର୍ଣ୍ଣାଢ୍ୟ ଶୋଭାଯାତ୍ରାରେ ମୋତିଲାଲ ନେହେରୁଙ୍କୁ ପାଛୋଟି ନେଇଥିଲେ । ଏଭଳି ଅପୂର୍ବ ଶୋଭାଯାତ୍ରାରେ ଏକ ହଜାର ଘୋଡ଼ସବାର, ଦୁଇ ହଜାର ମଟର ସାଇକେଲ୍, କୋଡ଼ିଏ ହଜାର ପୁରୁଷ ସ୍ୱେଚ୍ଛାସେବୀ, ଦୁଇ ହଜାର ମହିଳା ସ୍ୱେଚ୍ଛାସେବୀ, ତିନୋଟି ବ୍ୟାଣ୍ଡ ଦଳ ମାର୍ଚ୍ଚିଂ କରିଥିଲେ । କଂଗ୍ରେସ ସଭାପତିଙ୍କ ସମ୍ମାନାର୍ଥେ ହାଓ୍ୱଡ଼ା ଷ୍ଟେସନରୁ ପାର୍କ ସର୍କସ୍ ପର୍ଯ୍ୟନ୍ତ ରାସ୍ତାରେ ପଚିଶଟି ସୁନ୍ଦର ତୋରଣ ନିର୍ମିତ ହୋଇଥିଲା । ସୁଭାଷ ଚନ୍ଦ୍ର ବୋଷ ଏହି ଶୋଭାଯାତ୍ରାକୁ ନିଜେ ପରିଚାଳନା କରିଥିଲେ । ପାଞ୍ଚ ଲକ୍ଷ ଦର୍ଶକ ପାର୍କ ସର୍କସ୍ ମଇଦାନରେ ଉପସ୍ଥିତ ରହି ଏହି କାର୍ଯ୍ୟକ୍ରମକୁ ଆନନ୍ଦର ସହ ଉପଭୋଗ କରୁଥିଲେ । ବଂଗଳାର ପ୍ରଖ୍ୟାତ

ସାହିତ୍ୟିକ ଶ୍ରୀଯୁକ୍ତ ଶୈଳେଶ ଦେ ତାଙ୍କ ରଚିତ 'ଆମି ସୁଭାଷ ବଲିଛେ' ପୁସ୍ତକରେ ବିଶଦ ଭାବରେ ଏହା ଉଲ୍ଲେଖ କରିଛନ୍ତି । ସୁଭାଷଚନ୍ଦ୍ରଙ୍କର ଏହି ଅଭୂତପୂର୍ବ ସଂଗଠନ ଶକ୍ତି ସମସ୍ତଙ୍କଦ୍ୱାରା ପ୍ରଶଂସିତ ହୋଇଥିଲା । କିନ୍ତୁ ମୋହନଦାସ କରମଚାନ୍ଦ ଗାନ୍ଧି ଏହାକୁ ଭିନ୍ନ ଦୃଷ୍ଟିରେ ଦେଖି ତାଙ୍କ ପ୍ରତିକ୍ରିୟାରେ କହିଥିଲେ, 'A Circus in Park Circus' ।

ଏହି କଲିକତା ଅଧିବେଶନରେ ମୁଖ୍ୟପ୍ରସଙ୍ଗ ଥିଲା ଯେ ମହାତ୍ମାଗାନ୍ଧି ଡୋମିନିଅନ ମର୍ଯ୍ୟାଦା(Dominion Status) ଚାହୁଁ ବୋଲି ପ୍ରସ୍ତାବ ଆଣିଥିଲେ । ଡୋମିନିଅନ ମର୍ଯ୍ୟାଦାର ଅର୍ଥ ହେଲା ସୀମିତ ସ୍ୱାଧୀନତା । ଏହାକୁ ପୂର୍ଣ୍ଣ ସ୍ୱାଧୀନତାର ପୂର୍ବାବସ୍ଥା ରୂପେ ଦେଖାଯାଇପାରେ । କିନ୍ତୁ ସୁଭାଷ ଚନ୍ଦ୍ର ବୋଷ ତାକୁ ଗ୍ରହଣ ନ କରି 'ଆମେ ଚାହୁଁ ପୂର୍ଣ୍ଣ ସ୍ୱାଧୀନତା, ଖଣ୍ଡ ସ୍ୱାଧୀନତା ଆମେ ଚାହୁଁନା' କହିଥିଲେ । ହେଲେ ଗାନ୍ଧିଜୀଙ୍କ ସପକ୍ଷରେ ୧୩୫୦ ସମର୍ଥନ ମିଳିଥିଲା ବେଳେ ସୁଭାଷଙ୍କ ପ୍ରସ୍ତାବକୁ ୯୭୩ ଜଣ ଭୋଟ ଦେବାରୁ ଗାନ୍ଧିଜୀଙ୍କ ପ୍ରସ୍ତାବ ଗ୍ରହଣ ହୋଇଯାଇଥିଲା ।

ଗାନ୍ଧିଜୀ ଏହି ଅଧିବେଶନରେ ଘୋଷଣା କରିଥିଲେ ଯେ ୩୧ ଡିସେମ୍ବର ୧୯୨୯ ପୂର୍ବରୁ ଯଦି ନେହେରୁ କମିଟିଦ୍ୱାରା ପ୍ରସ୍ତୁତ ଶାସନତନ୍ତ୍ରକୁ ବ୍ରିଟିଶ ସରକାର ଗ୍ରହଣ କରିନିଅନ୍ତି ତେବେ ଜାତୀୟ କଂଗ୍ରେସ ସେଥିରେ ସମ୍ମତ ହେବ, ଅନ୍ୟଥା ଜାତୀୟ କଂଗ୍ରେସ ଭାରତରେ 'କର ଉଚ୍ଛେଦ' ଆନ୍ଦୋଳନ ଆରମ୍ଭ କରିବ ।

୧୯୨୯ ମସିହାରେ ଐତିହାସିକ ଲାହୋର କଂଗ୍ରେସ ଜବାହରଲାଲ ନେହେରୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ନୂତନ ଭାବେ ପ୍ରସ୍ତୁତ ତ୍ରିରଂଗା ପତାକାକୁ ଡିସେମ୍ବର ୩୧ ତାରିଖରେ ସଭାସ୍ଥଳରେ ଉଡ଼ାଯାଇଥିଲା ଏବଂ ୧୯୩୦ ଜାନୁଆରି ୨୬ ତାରିଖରେ ପ୍ରଥମ ସ୍ୱାଧୀନତା ଦିବସ ପାଳନ କରାଯାଇଥିଲା । କଂଗ୍ରେସ ପୂର୍ଣ୍ଣ ସ୍ୱରାଜ ପ୍ରସ୍ତାବ ପାସ୍ କରିଥିଲା ।

୧୯୨୯ ମସିହାରେ ସମଗ୍ର ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ବିପ୍ଳବ ତୀବ୍ର ଆକାର ଧାରଣ କଲା । ପଂଜାବରେ ଲାଲା ଲଜପତ ରାୟଙ୍କର ମୃତ୍ୟୁବରଣ ଲୋକମାନଙ୍କୁ ଉତ୍ତେଜିତ କରିଥିଲା । ପ୍ରତିଶୋଧ ନେବାକୁ ଯାଇ ବିପ୍ଳବୀ ଶିବରାମ ରାଜଗୁରୁ ଇଂରେଜ ପୋଲିସ୍ ସବ୍‌ଇନିସ୍ପେକ୍ଟରଙ୍କୁ ହତ୍ୟା କରିଥିଲେ । ଏହି ପରିପ୍ରେକ୍ଷୀରେ ଇଂରେଜ ସରକାର ଲାହୋର ଷଡ଼ଯନ୍ତ୍ର ମାମଲା ଦାୟର କରି ପଂଜାବର 'ନଓ ଯବାନ ଭାରତ ସଭା'ର ବାରଜଣ ଯୁବକଙ୍କ ବିରୁଦ୍ଧରେ ଅଭିଯୋଗ ଆଣିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଭଗତ ସିଂହ, ବଟୁକେଶର ଦତ୍ତ, ଯତୀନ୍ ଦାସ, ଶିବରାମ ରାଜଗୁରୁ, ସୁଖଦେବ, ଅଜୟ ଘୋଷ, ଚନ୍ଦ୍ରଶେଖର ଆଜାଦ୍ । ପଂଜାବର ଏହି ଯୁବ ଆନ୍ଦୋଳନକୁ ଦୃଢ଼ ଭାବରେ ସମର୍ଥନ କରି ସୁଭାଷ ଚନ୍ଦ୍ର ବୋଷଙ୍କ



**୧୯୨୮ ମସିହା କଲିକତା କଂଗ୍ରେସ୍ ଅଧିବେଶନରେ ମୋତିଲାଲ୍ ନେହେରୁ ଓ ଅନ୍ୟମାନଙ୍କ ସହ ସୁଭାଷ ବୋଷ**

ନେତୃତ୍ୱରେ ବଂଗଳାର ଯୁବସମାଜ ସରକାରଙ୍କ ଦମନନୀତିକୁ ତୀବ୍ର ବିରୋଧ କରି, ସବୁଆଡ଼େ ସଭା ଓ ଶୋଭାଯାତ୍ରାମାନ କରିଥିଲେ । ଲାହୋର ଜେଲରେ ପୋଲିସର ନିର୍ଯ୍ୟାତନା ଓ ଦୁର୍ବ୍ୟବହାରର ପ୍ରତିବାଦ କରି ଯତୀନ୍ ଦାସ ୬୩ ଦିନ ଅନଶନ ଓ ଧର୍ମଘଟ କରି ମୃତ୍ୟୁବରଣ କଲେ । ତାଙ୍କ ମୃତ ଦେହକୁ ଲାହୋରରୁ କଲିକତା ଅଣାଯାଇଥିଲା । ହାଓଡ଼ା ଷ୍ଟେସନରେ ତାଙ୍କ ମୃତ ଶରୀରକୁ ଶ୍ରଦ୍ଧାଞ୍ଜଳି ଜଣାଇବାପାଇଁ ହଜାର ହଜାର ଲୋକ ଗୁଣ୍ଡ ହୋଇଥିଲେ । ଯତୀନ ଦାସଙ୍କର ମୃତ୍ୟୁ ଭାରତବର୍ଷର ଜନମାନସରେ ତୀବ୍ର ଆଘାତ ପହଞ୍ଚାଇ ଥିଲା । ପୁନା ସହରରେ ପଣ୍ଡିତ ଜବାହରଲାଲ ନେହେରୁ ଓ ଅହମ୍ମଦାବାଦଠାରେ ଶ୍ରୀମତୀ କମଳା ଦେବୀ ଚଟ୍ଟୋପାଧ୍ୟାୟ ଜନତାକୁ ଉଦ୍‌ବୋଧନ ଦେଇ ବ୍ରିଟିଶ ସରକାରଙ୍କ ହିଂସ୍ର ଦମନଲୀଳାକୁ ତୀବ୍ର ସମାଲୋଚନା କରିଥିଲେ ।

ସୁଭାଷ ଚନ୍ଦ୍ର ବୋଷ ଆନ୍ଦୋଳନକାରୀମାନଙ୍କଦ୍ୱାରା ନିମନ୍ତ୍ରିତ ହୋଇ ଲାହୋର, ନାଗପୁର ଓ ଅମରାବତୀ ସହରମାନଙ୍କରେ ଯତୀନ ଦାସଙ୍କୁ ଶ୍ରଦ୍ଧାଞ୍ଜଳି ଦେବା ଉଦ୍ଦେଶ୍ୟରେ ଆୟୋଜିତ ସଭାମାନଙ୍କରେ ଉଦ୍‌ବୋଧନ ଦେଇ ଯତୀନ୍ ଦାସଙ୍କୁ 'ଯୁବକ-ଦଧିଚି' ବୋଲି ବର୍ଣ୍ଣନା କରିଥିଲେ । ତାଙ୍କ ଭାଷଣ ହଜାର ହଜାର ଲୋକଙ୍କୁ ଇଂରେଜ ସରକାର ବିରୁଦ୍ଧରେ ସକ୍ରିୟ ଆନ୍ଦୋଳନ କରିବାକୁ ଉତ୍ସାହିତ କରିଥିଲା ଓ ପ୍ରେରଣା ଯୋଗାଇଥିଲା ।

୧୯୩୦ ମସିହା ଫେବୃଆରି ମାସରେ ପଣ୍ଡିତ ମୋତିଲାଲ ନେହେରୁ ମୃତ୍ୟୁବରଣ କରିଥିଲେ । ସୁଭାଷଙ୍କ ପାଇଁ ଏହା ଥିଲା ବିରାଟ କ୍ଷତି । ଚିତ୍ତରଂଜନଙ୍କ ପରେ ମୋତିଲାଲ ସ୍ୱରାଜ ପାର୍ଟିର ମୁଖ୍ୟ ଥିଲେ । ମୃତ୍ୟୁ ପୂର୍ବରୁ ସେ ଆହ୍ଲାବାଦରେ ଥିବା ନିଜ ବାସଭବନ (ଆନନ୍ଦ ଭବନ)କୁ ଦେଶପାଇଁ ଦାନ କରିଦେଇଥିଲେ ।

୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖରେ ମହାତ୍ମା ଗାନ୍ଧି ଆଇନ୍ ଅମାନ୍ୟ ଆନ୍ଦୋଳନର ଶୁଭାରମ୍ଭ କରିଥିଲେ । ଜାତୀୟ ଆନ୍ଦୋଳନରେ ଏହା ଲବଣ ସତ୍ୟାଗ୍ରହ ଭାବରେ ପରିଚିତ । ଏହି ଉଦ୍ଦେଶ୍ୟରେ ସାବରମତି ଆଶ୍ରମରୁ ଦାଣ୍ଡି ଅଭିମୁଖେ ତାଙ୍କର ଯାତ୍ରା ସମଗ୍ର ଦେଶକୁ ଗଭୀର ଭାବେ ଆଲୋଡ଼ିତ କରିଥିଲା । ସେତେବେଳେ ସୁଭାଷ ଚନ୍ଦ୍ର ବୋଷ କଲିକତା ମହାନଗରୀର ମେୟର ପଦବୀରେ ଅଧିଷ୍ଠିତ ଥିଲେ । ଏହି ସମୟରେ ସେ ଅଲ୍ ଇଣ୍ଡିଆ ଟ୍ରେଡ୍ ୟୁନିୟନ୍ କଂଗ୍ରେସର କୋଷାଧ୍ୟକ୍ଷ ପଦ ମଧ୍ୟ ଦୁଇବର୍ଷପାଇଁ ଗ୍ରହଣ କରିଥିଲେ । ଲାହୋର ଅଧିବେଶନରେ ସୁଭାଷ ଚନ୍ଦ୍ର ବୋଷଙ୍କୁ କଂଗ୍ରେସ କାର୍ଯ୍ୟକାରିଣୀ କମିଟିରେ ସ୍ଥାନ ଦିଆଯାଇ ନଥିଲା । ସୁଭାଷଙ୍କର ଉଗ୍ର ନୀତିଯୋଗୁଁ ଇଂରେଜ ସରକାର ତାଙ୍କୁ କଲିକତାରେ ଗିରଫ କରି ଏକବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କଲେ । ୧୯୩୧ ମସିହା ଜାନୁଆରି ୨୬ ତାରିଖରେ ବିଲାତ ପ୍ରଧାନମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ ଗାନ୍ଧିଜୀ ଓ କଂଗ୍ରେସର ଅନ୍ୟ ନେତାମାନଙ୍କୁ ଜେଲଖାନାରୁ ମୁକ୍ତି ଦିଆଗଲା ।

ସୁଭାଷ ଚନ୍ଦ୍ର ବୋଷ କଲିକତା ମହାନଗରୀର ମେୟର ଥିଲା ବେଳେ ସ୍ୱାଧୀନତା ଦିବସ ପାଳନ ଉପଲକ୍ଷ୍ୟେ ଏକ ବିରାଟ ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ତାଙ୍କ ନେତୃତ୍ୱରେ ବାହାରିଥିଲା । ଏକ୍ସପ୍ଲାନେଡ୍ ବାଟ ଦେଇ ଯାଉଥିବା ସମୟରେ ପୋଲିସ୍ ଶୋଭାଯାତ୍ରାକାରୀଙ୍କ ଉପରେ ଲାଠି ପ୍ରହାର କଲେ । ସୁଭାଷ ବୋଷ ପୋଲିସର ଲାଠିମାଡ଼ରେ ଅଚେତ୍ ହୋଇ ରାସ୍ତା ଉପରେ ପଡ଼ିଗଲେ । ତାଙ୍କୁ ସେହିଠାରେ ଗିରଫ କରାଯାଇ ଜେଲ୍‌କୁ ପଠାଇ ଦିଆଗଲା । ମାର୍ଚ୍ଚ ମାସରେ ସୁଭାଷ ଜେଲ୍‌ରୁ ଖଲାସ ହେଲେ । ସାରା ଦେଶରେ ସରକାରବିରୋଧୀ ଆନ୍ଦୋଳନ ତୀବ୍ର ରୂପ ଧାରଣ କରିଥିଲା । ଅବସ୍ଥାକ୍ରମେ ପରିସ୍ଥିତି ନିୟନ୍ତ୍ରଣ ବାହାରକୁ ଚାଲିଯାଉଥିବା ଜାଣି ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଭାରତର ଭାଇସ୍ ରାୟ ଲର୍ଡ ଇରଉଇନଙ୍କୁ ଗାନ୍ଧିଜୀଙ୍କ ସହିତ ଆଲୋଚନା କରିବା ପାଇଁ ନିର୍ଦ୍ଦେଶ ଦେଲେ । ୧୯୩୧ ମସିହା ମାର୍ଚ୍ଚ ମାସରେ ଭାଇସ୍‌ରାୟ ଇରଉଇନ୍ ଏବଂ ଗାନ୍ଧିଜୀଙ୍କ ମଧ୍ୟରେ ଆଲୋଚନା ହୋଇ ଉଭୟ ଏକ ରାଜିନାମାରେ ପହଞ୍ଚିଲେ । ଏହି ରାଜିନାମାର ସର୍ତ୍ତ ଥିଲା ଯେ ସରକାର ସମସ୍ତ ରାଜନୈତିକ ବନ୍ଦୀମାନଙ୍କୁ ଜେଲ୍‌ରୁ ଖଲାସ କରିଦେବେ । କଂଗ୍ରେସ୍ ତା'ର ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖିବ ଏବଂ ଦ୍ୱିତୀୟ ଗୋଲଟେବୁଲ୍ ବୈଠକରେ

କଂଗ୍ରେସ ଭାଗ ନେବ । ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ, ୧୯୩୦ ମସିହାରେ ଲଣ୍ଡନଠାରେ ଅନୁଷ୍ଠିତ ପ୍ରଥମ ଗୋଲ୍ ଟେବୁଲ୍ ବୈଠକକୁ ଜାତୀୟ କଂଗ୍ରେସ ବର୍ଜନ କରିଥିଲା । ସୁଭାଷ ଚନ୍ଦ୍ର ବୋଷ ଏହି ରାଜିନାମାରେ ଘୋର ଅସନ୍ତୋଷ ପ୍ରକାଶ କରିଥିଲେ । ବ୍ରିଟିଶ୍ ସରକାର କଂଗ୍ରେସର କୌଣସି ଗୋଟିଏ ସର୍ତ୍ତ ମଧ୍ୟ ମାନି ନଥିଲା । ଭଗତ ସିଂହ ଓ ତାଙ୍କର ଦୁଇ ସାଥୀ ସୁଖଦେବ ଓ ରାଜଗୁରୁଙ୍କ ମୃତ୍ୟୁଦଣ୍ଡକୁ କୋହଳ କରି ଆଜୀବନ କାରାଦଣ୍ଡରେ ପରିଣତ କରିବାକୁ ସରକାର ରାଜି ହୋଇନଥିଲେ । କିନ୍ତୁ ଗାନ୍ଧିଜୀ କହୁଥିଲେ ଯେ ଆଲୋଚନା ମାଧ୍ୟମରେ ସରକାରଙ୍କ ହୃଦୟ ପରିବର୍ତ୍ତନ ହେବ । କରାଚୀଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଗାନ୍ଧି-ଇରଉଇନଙ୍କ ମଧ୍ୟରେ ହୋଇଥିବା ରାଜିନାମାକୁ ଗ୍ରହଣ କରିନିଆଯାଇଥିଲା ।



ମେୟର ସୁଭାଷ

୧୯୩୦ ମସିହା ଅକ୍ଟୋବର ମାସରେ ଲାହୋର ଷଡ଼ଯନ୍ତ୍ର ମାମଲାର ରାୟ ପ୍ରକାଶ ପାଇଲା ଓ ଭଗତ ସିଂହ, ରାଜଗୁରୁ, ସୁଖଦେବଙ୍କୁ ଫାଶୀ ଦଣ୍ଡରେ ଦଣ୍ଡିତ କରାଗଲା । ଅନ୍ୟ ଆଠ ଜଣଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦିଆଯାଇଥିଲା । ଏହାର ପୁନର୍ବିଚାର ଲାଗି ଲଣ୍ଡନସ୍ଥିତ ପ୍ରିଭି କାଉନ୍ସିଲ୍‌ରେ ଅପିଲ୍ କରାଯାଇଥିଲେ ମଧ୍ୟ ୧୯୩୧ ମସିହା ଫେବୃଆରି ମାସରେ ପ୍ରିଭି କାଉନ୍ସିଲ୍ ପୂର୍ବ ଦଣ୍ଡ କାଏମ ରଖିଲେ । ୧୯୩୧ ମସିହା ମାର୍ଚ୍ଚ ୨୩ ତାରିଖରେ ଭଗତ ସିଂହ, ରାଜଗୁରୁ, ସୁଖଦେବଙ୍କୁ ଫାଶୀ ଦିଆଗଲା । ଫାଶୀ ମଞ୍ଚରେ ଠିଆ ହୋଇ ଭଗତ ସିଂହ ସ୍ଲୋଗାନ୍ ଦେଇଥିଲେ 'ଇନ୍‌କଲାବ ଜିନ୍ଦାବାଦ୍' । ଏହି ସ୍ଲୋଗାନ୍‌ର ସୃଷ୍ଟି କର୍ତ୍ତା ଥିଲେ ଶହୀଦ୍ ଭଗତ ସିଂହ । ଚନ୍ଦ୍ରଶେଖର ଆଜାଦ ମଧ୍ୟ ୧୯୩୧ ଫେବୃଆରିରେ ଆହ୍ଲାବାଦରେ ପୋଲିସ୍ ଏନ୍‌କାଉଣ୍ଟରରେ ପ୍ରାଣ ହରାଇଥିଲେ ।

ବଂଗ ପ୍ରଦେଶର ଚଟ୍ଟଗ୍ରାମ ସହର ଯୁବ ବିପ୍ଲବୀମାନଙ୍କ ଅକ୍ତିଆରରେ ତିନି ଦିନ ରହିଥିଲା, କିନ୍ତୁ ବ୍ରିଟିଶ ସୈନ୍ୟମାନଙ୍କର ପ୍ରବଳ ଆକ୍ରମଣରେ ବହୁ ସଂଗ୍ରାମୀ ଯୁବକ

ମୃତ୍ୟୁବରଣ କଲେ । ସେମାନଙ୍କ ନେତା ସୂର୍ଯ୍ୟ ସେନ୍ ଇଂରେଜମାନଙ୍କ ହାତରେ ଧରାପଡ଼ି ଅକଥନୀୟ ଅତ୍ୟାଚାର ଭୋଗ କଲେ । ଶେଷରେ ସଂଜ୍ଞାହୀନ ଅବସ୍ଥାରେ ୧୯୩୩ ଫେବୃଆରିରେ ତାଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଗଲା । ସ୍ୱାଧୀନତା ପରେ ଏହି ସଂଗ୍ରାମୀଙ୍କ ଦେଶପ୍ରେମକୁ ସ୍ୱୀକୃତି ଦେଇ କଲିକତାର ଏକ ରାସ୍ତାକୁ ସୂର୍ଯ୍ୟ ସେନ୍ ଷ୍ଟ୍ରିଟ୍ ବୋଲି ନାମିତ କରାଯାଇଅଛି ।

ଗାନ୍ଧିଜୀ ୧୯୩୧ ମସିହା ସେପ୍ଟେମ୍ବର ମାସ ୧୨ ତାରିଖରେ ଦ୍ୱିତୀୟ ଗୋଲଟେବୁଲ୍ ବୈଠକରେ ଯୋଗ ଦେଇଥିଲେ, କିନ୍ତୁ ତାଙ୍କର ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ଭାରତରେ ସ୍ୱାୟତ୍ତଶାସନ ପ୍ରବର୍ତ୍ତନ କରିବାକୁ ବ୍ରିଟିଶ ସରକାର ଅନୁମତି ଦେଇନଥିଲେ । ବୈଠକ ଶେଷରେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ରାମସେ ମ୍ୟାକ୍‌ଡୋନାଲ୍ଡ ଯେଉଁ ନିଷ୍ପତ୍ତି ଘୋଷଣା କଲେ, ତାହା ଗାନ୍ଧିଜୀଙ୍କୁ ହତାଶ କରିଥିଲା । ୧୯୩୨ ମସିହା ଜାନୁଆରି ୧ ତାରିଖରେ କଂଗ୍ରେସ କାର୍ଯ୍ୟକାରିଣୀ କମିଟି ସରକାରଙ୍କ କାର୍ଯ୍ୟରେ ଘୋର ଅସନ୍ତୋଷ ପ୍ରକାଶ କରି ପୁନର୍ବାର ଆନ୍ଦୋଳନ ଓ ସତ୍ୟାଗ୍ରହ କରିବାର ନିଷ୍ପତ୍ତି ଗ୍ରହଣ କଲେ ।

ଗାନ୍ଧିଜୀ ଇଂଲଣ୍ଡରୁ ଫେରିବା ପରେ ପୁନର୍ବାର ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିଥିଲେ । ଏହି ଆନ୍ଦୋଳନରେ ଯୋଗଦେଇ ଲକ୍ଷାଧିକ ସତ୍ୟାଗ୍ରହୀ ଜେଲ୍‌ବରଣ କରିଥିଲେ ଏବଂ ସେମାନଙ୍କର ଜମି, ଘର, ଅନ୍ୟାନ୍ୟ ସଂପତ୍ତି ସରକାର ବ୍ୟାଜାପ୍ତ କରିଥିଲେ । କଂଗ୍ରେସକୁ ସରକାର ବେଆଇନ୍ ଘୋଷଣା କରିଥିଲେ । ୧୯୩୦ ମସିହାରେ କଂଗ୍ରେସର କରାଚୀ ଅଧିବେଶନରେ, ଇଂରେଜ ସରକାର ଆଲୋଚନା ମାଧ୍ୟମରେ କଂଗ୍ରେସକୁ କେବେ ବି ସ୍ୱାୟତ୍ତଶାସନ ଦେବ ନାହିଁ ବୋଲି ସୁଭାଷ ଚନ୍ଦ୍ର ବୋଷ ଯେଉଁ କଥା କହିଥିଲେ, ତାହାର ସତ୍ୟତା ସମସ୍ତେ ଉପଲବ୍ଧି କଲେ । ସୁଭାଷଚନ୍ଦ୍ରଙ୍କ ମଝିଆ ଭାଇ ତଥା କଲିକତା ବାରର ଜଣେ ସ୍ୱନାମଧନ୍ୟ ଆଡଭୋକେଟ୍ ଶରତ ଚନ୍ଦ୍ର ବୋଷଙ୍କୁ ବଂଗଳାର ସନ୍ତ୍ରାସବାଦୀମାନଙ୍କୁ ଅର୍ଥ ଯୋଗାଉଛନ୍ତି ବୋଲି ମିଥ୍ୟା ଅଭିଯୋଗରେ ପୋଲିସ୍ ଗିରଫ କଲା ଏବଂ ତାଙ୍କୁ ବନ୍ଦୀ କରି ମାନ୍ଦ୍ରାଜ ଜେଲରେ ରଖାଗଲା । ଗାନ୍ଧିଜୀଙ୍କୁ ବନ୍ଦୀକରି ପୁନା ଜେଲରେ ରଖାଯାଇଥିଲା । ମାନ୍ଦ୍ରାଜ ଜେଲରେ ଥିବା ସମୟରେ ସୁଭାଷଙ୍କ ସ୍ୱାସ୍ଥ୍ୟାବସ୍ଥାରେ ଅବନତି ଦେଖାଦେଲା । କଲିକତାର ଦୁଇଜଣ ପ୍ରସିଦ୍ଧ ଡାକ୍ତର ବିଧାନଚନ୍ଦ୍ର ରାୟ ଓ ନୀଳରତନ ସରକାର ତାଙ୍କୁ ପରୀକ୍ଷା କରି ସରକାରଙ୍କୁ ଜଣାଇଦେଲେ ଯେ ସୁଭାଷ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହୋଇଛନ୍ତି ଏବଂ ତାଙ୍କୁ ସୁଇଜରଲାଣ୍ଡ ପଠାଇବା ନିହାତି ଆବଶ୍ୟକ । ଜେଲରେ ଅଧିକ ଦିନ ରହିଲେ ତାଙ୍କ ଜୀବନ ପ୍ରତି ବିପଦ ରହିଛି ।

## ୟୁରୋପ ଯାତ୍ରା

୧୯୩୩ ମସିହା ଫେବ୍ରୁଆରି ମାସ ୨୨ ତାରିଖ ଦିନ ସୁଭାଷ ଜେଲଖାନାରୁ ମୁକ୍ତ ହେଲେ ଏବଂ ତାଙ୍କୁ ନିଜ ଖର୍ଚ୍ଚରେ ଭିଏନାରେ ଯାଇ ଚିକିତ୍ସିତ ହେବାକୁ ଅନୁମତି ମିଳିଲା । ସେ କଲିକତା ଆସିପାରିବେ ନାହିଁ ବୋଲି ତାଙ୍କ ଉପରେ ନିଷେଧାଜ୍ଞା ଜାରି ହୋଇଥିଲା । ଫେବ୍ରୁଆରି ୨୩ ତାରିଖରେ ସୁଭାଷ ଭିଏନା ଯାତ୍ରା ଆରମ୍ଭ କରି ମାର୍ଚ୍ଚ ୩୧ ତାରିଖରେ ଭିଏନାରେ ପହଞ୍ଚିଲେ । ସେଠାରେ ସେ ଡକ୍ଟର ଫୁର୍ଥଙ୍କ ସାନିଟୋରିୟମ୍‌ରେ ଚିକିତ୍ସିତ ହେଲେ । ସଂଯୋଗବଶତଃ, ସେହି ସମୟରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କର ବଡ଼ଭାଇ ବିଠଲଭାଇ ପଟେଲ ମଧ୍ୟ ଗୁରୁତର ଅସୁସ୍ଥ ଥାଇ ଭିଏନାଠାରେ ଚିକିତ୍ସିତ ହେଉଥିଲେ । ବିଠଲଭାଇ ଓ ସୁଭାଷ ଭିଏନାର ହୋଟେଲ 'ଦ୍ୟା ଫ୍ରାଁସେ'ରେ ଅବସ୍ଥାନ କରୁଥିଲେ । ଏହି ଅବସ୍ଥାନ କାଳରେ ଦୁହିଙ୍କ ମଧ୍ୟରେ ଘନିଷ୍ଠତା ବଢ଼ିଯାଇଥିଲା । ଦୁଇଜଣଯାକ ଥିଲେ ଅନନ୍ୟ ଦେଶପ୍ରେମୀ । ବିଠଲଭାଇ ଥିଲେ ଜଣେ ଆଇନଜ୍ଞ ଏବଂ ପୂର୍ବରୁ କେନ୍ଦ୍ରୀୟ ଆଇନ ପରିସରର ସ୍ପିକର ରହିଥିଲେ । ସୁଭାଷ ବୋଷଙ୍କ ସହିତ ତାଙ୍କ ଚିନ୍ତାଧାରାର ବହୁ ସାମଞ୍ଜସ୍ୟ ଥିଲା । ୧୯୩୩ ମସିହା ଏପ୍ରିଲ ମାସରେ ଗାନ୍ଧିଜୀ ବଡ଼ଲାଟଙ୍କ ସହିତ ଆଲୋଚନା କରି ଆଇନ୍ ଅମାନ୍ୟ ଆନ୍ଦୋଳନକୁ ପ୍ରତ୍ୟାହାର କରିନେଲେ । ଏଥିରେ ସୁଭାଷ ଚନ୍ଦ୍ର ପ୍ରତିକ୍ରିୟା ପ୍ରକାଶ କରି କହିଥିଲେ ଯେ, ଗାନ୍ଧିଜୀଙ୍କର କାର୍ଯ୍ୟପନ୍ଥା ଏବଂ ଆଲୋଚନା ମାଧ୍ୟମରେ କୌଣସି ମହତ କାର୍ଯ୍ୟ ସାଧିତ ହେବ ନାହିଁ । ସେହି ସମୟରେ ସୁଭାଷ ଚନ୍ଦ୍ର ବୋଷଙ୍କୁ ଋଷିଆ ଯିବାକୁ ନିମନ୍ତ୍ରଣ ମିଳିଲା । ସୁଭାଷ ମଧ୍ୟ ଋଷିଆ ଯିବାକୁ ଆଗ୍ରହୀ ଥିଲେ । କିନ୍ତୁ ବିଠଲଭାଇ ତାଙ୍କୁ ବୁଝାଇଦେଲେ ଯେ ଋଷିଆ ସହିତ ସମ୍ବନ୍ଧ ସ୍ଥାପନ କଲେ ସୁଭାଷଙ୍କର ଲକ୍ଷ୍ୟ ସାଧନାରେ ବହୁ ପ୍ରତିବନ୍ଧକ ଦେଖାଦେବ । ସୁଭାଷ ତାଙ୍କ କଥା ମାନିନେଇଥିଲେ । ସୁଭାଷ କିନ୍ତୁ କିଛିଦିନପାଇଁ ବୁଲଗେରିଆ, ଚେକୋସ୍ଲୋଭାକିଆ, ଇଜିପ୍ଟ, ଫ୍ରାନ୍ସ, ଜର୍ମାନୀ, ଆୟରଲ୍ୟାଣ୍ଡ, ଇଟାଲୀ, ପୋଲାଣ୍ଡ, ରୋମାନିଆ, ସୁଇଜରଲ୍ୟାଣ୍ଡ, ତୁର୍କୀ ଏବଂ ଯୁଗୋସ୍ଲୋଭିଆ ପ୍ରଭୃତି ୟୁରୋପୀୟ ଦେଶମାନ ଭ୍ରମଣ କରି ସେଠାରେ ବିଶିଷ୍ଟ ଚିନ୍ତାନାୟକମାନଙ୍କୁ ଭାରତରେ ବ୍ରିଟିଶ ସରକାର କିଭଳି ଅମାନୁଷିକ ଅତ୍ୟାଚାର କରୁଛନ୍ତି, ତାହା ଜଣାଇଲେ । ଭାରତୀୟ ଛାତ୍ରମାନଙ୍କ ସଂଗଠନରେ, ଭାରତର ପରାଧୀନତାର ଗ୍ଲାନି ସଂପର୍କରେ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇ ଭାରତୀୟ ମୁକ୍ତି ଆନ୍ଦୋଳନରେ ସାମିଲ ହେବାକୁ ଆହ୍ୱାନ ଦେଇଥିଲେ । ୧୯୩୩ ମସିହା ମାର୍ଚ୍ଚ ମାସରୁ ୧୯୩୬ ମାର୍ଚ୍ଚ ତିନିବର୍ଷ ମଧ୍ୟରେ ସେ ଉପରୋକ୍ତ ଦେଶଗୁଡ଼ିକରେ ଭାରତର ଜାତୀୟତା ଆନ୍ଦୋଳନ ସପକ୍ଷରେ ଏକ ବାତାବରଣ ସୃଷ୍ଟି କରିବାରେ ସକ୍ଷମ ହୋଇଥିଲେ ।

ଜୁନ୍, ୧୯୩୩ରେ ଲଣ୍ଡନରେ ଅନୁଷ୍ଠିତ ହୋଇଥିବା ଭାରତ ରାଜନୈତିକ ସମ୍ମିଳନୀରେ ଯୋଗଦେବାକୁ ବ୍ରିଟିଶ ସରକାର ତାଙ୍କୁ ବାରଣ କରିବାରୁ ସେହି ସମ୍ମିଳନୀକୁ ତାଙ୍କର ଲିଖିତ ବକ୍ତୃତା ପଠାଇଥିଲେ, ଯାହା 'ଲଣ୍ଡନ ଥେସିସ୍' ନାମରେ ଖ୍ୟାତ। ଏହି ବକ୍ତୃତାରେ ସେ ଗାନ୍ଧିଙ୍କ ସତ୍ୟାଗ୍ରହକୁ ପ୍ରଶଂସା କରିଥିଲେ। ଏହି ବକ୍ତୃତାରେ ସେ ସାମ୍ୟବାଦ ସପକ୍ଷରେ ଯୁକ୍ତି ବାଢ଼ି ବୁଦ୍ଧଙ୍କ ପ୍ରଚାରିତ ମଣିଷମାନଙ୍କ ମଧ୍ୟରେ ସମାନତା ଓ ସହୃଦୟତା ବିଷୟରେ ଉଲ୍ଲେଖ କରିଥିଲେ।

ବିଠଲଭାଇଙ୍କ ସ୍ୱାସ୍ଥ୍ୟାବସ୍ଥା ଧୀରେ ଧୀରେ ଅବନତି ଆଡକୁ ଗତିକଲା। ସୁଭାଷ ତାଙ୍କର ସବୁ କାର୍ଯ୍ୟ ବନ୍ଦ ରଖି ବିଠଲଭାଇଙ୍କ ରୋଗଶଯ୍ୟା ନିକଟରେ ରହି ତାଙ୍କର ସେବା କରୁଥିଲେ। ବିଠଲଭାଇ ତାଙ୍କୁ କହିଥିଲେ ଯେ ତୁମେ ଏକମାତ୍ର ବ୍ୟକ୍ତି ଯେ ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଠିକ୍ ଭାବରେ ଚଳାଇପାରିବ। ବିଠଲଭାଇ ସୁଭାଷ ବୋଷଙ୍କୁ ଏକ ଲକ୍ଷ ଟଙ୍କା ଦେବାପାଇଁ ତାଙ୍କ ଉଇଲରେ ଉଲ୍ଲେଖ କରିଥିଲେ, ଯାହାକୁ କି ସୁଭାଷ ବୋଷ ତାଙ୍କ ଇଚ୍ଛାନୁସାରେ ବିଦେଶରେ ଭାରତର ସ୍ୱାଧୀନତାପାଇଁ ପ୍ରଚାର କରିବାରେ ଖର୍ଚ୍ଚ କରିଥାନ୍ତେ; କିନ୍ତୁ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଆଇନର ବିଭିନ୍ନ ଦିଗ ତର୍ଜମା କରି ଉଇଲରେ ଥିବା ସେହି ସର୍ତ୍ତକୁ ନାକଚ କରିଦେବାରେ ସକ୍ଷମ ହେଲେ ଓ ସୁଭାଷ ସେ ଟଙ୍କା ପାଇପାରିଲେ ନାହିଁ। ଏହା ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କର ସୁଭାଷଙ୍କ ପ୍ରତି ବିଦ୍ୱେଷ ଭାବର ପରିଚୟ ଦିଏ।

୧୯୩୪ ମସିହାରେ ସୁଭାଷ ବୋଷ ଲେଖିଥିବା 'Indian Struggle' ପୁସ୍ତକରେ ୧୯୨୦ ଠାରୁ ୧୯୩୪ ପର୍ଯ୍ୟନ୍ତ ଭାରତର ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ହୋଇଥିବା ପ୍ରଗତିମାନ ଲିପିବଦ୍ଧ ହୋଇଥିଲା। ସେଥିରେ ସୁଭାଷ ନିଜକୁ ଜଣେ ବାସ୍ତବବାଦୀ, ବିଜ୍ଞାନଧର୍ମୀ ତଥା ଆଧୁନିକ ବ୍ୟକ୍ତିତ୍ୱ ଭାବରେ ବର୍ଣ୍ଣନା କରିଥିଲେ। ସେଥିରେ ସେ ଗାନ୍ଧିଙ୍କୁ ଜଣେ ଗୋଳମାଳିଆ, ବିଶୃଙ୍ଖଳିତ ତଥା ସାଲିସବାଦୀ ବ୍ୟକ୍ତିତ୍ୱ ରୂପରେ ଚିତ୍ରିତ କରିଥିଲେ। ସୁଭାଷ ବୋଷଙ୍କଦ୍ୱାରା ଗାନ୍ଧିଙ୍କର ଏତାଦୃଶ ଚିତ୍ରଣକୁ ରବୀନ୍ଦ୍ରନାଥ ଠାକୁର ବିରୋଧ କରିଥିଲେ। ସେ ସୁଭାଷଙ୍କୁ ଦର୍ଶାଇ ଦେଇଥିଲେ ଯେ, ଗାନ୍ଧୀଙ୍କ ବଳିଷ୍ଠ ନେତୃତ୍ୱ ସଂପୂର୍ଣ୍ଣ ଏକ ବିଶିଷ୍ଟ ବ୍ୟକ୍ତିତ୍ୱ। ଖୁବ୍ ଅଳ୍ପଦିନ ମଧ୍ୟରେ ତାଙ୍କ ନେତୃତ୍ୱରେ ଭାରତ ଗୋଟିଏ ଯୁଗରୁ ଅନ୍ୟ ଏକ ଯୁଗକୁ ଲମ୍ଫ ପ୍ରଦାନ କରିଛି। ଗାନ୍ଧି ଏକ ନୈତିକ ଶକ୍ତିର ଆଧାର। ରବୀନ୍ଦ୍ରନାଥ ଠାକୁର ସୁଭାଷଙ୍କୁ ଆହୁରି ଚେତେଇ ଦେଇଥିଲେ ଯେ ସେ ଗାନ୍ଧୀଙ୍କୁ ଅନ୍ଧ ଭାବରେ ଅନୁସରଣ କରିନାହାନ୍ତି। ସେ ଭଲ ଭାବରେ ତାଙ୍କ ଆଦର୍ଶକୁ ଅନୁଧ୍ୟାନ କରି ତାଙ୍କୁ ଅନୁସରଣ କରୁଅଛନ୍ତି। ରବୀନ୍ଦ୍ରନାଥ ଗାନ୍ଧିଙ୍କ ସହ ତାଙ୍କର କେଉଁ କେଉଁ

କ୍ଷେତ୍ରରେ ମତ ପାର୍ଥକ୍ୟ ଅଛି, ତାହା ମଧ୍ୟ ସୁଭାଷଙ୍କୁ ସୂଚାଇ ଦେଇଥିଲେ । ତଥାପି, ସେ ଗାନ୍ଧିଙ୍କ ଅନୁଗାମୀ, କାରଣ ଭାରତୀୟମାନଙ୍କ ମଧ୍ୟରେ ଏକ ଜାଗରଣ ଆଣିବାରେ ତାଙ୍କ ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ ।

୧୯୩୪ ମସିହା ନଭେମ୍ବର ମାସରେ ଭିଏନାଠାରେ ସୁଭାଷଙ୍କ ପାଖରେ ଖବର ପହଞ୍ଚିଲା ଯେ ତାଙ୍କ ପିତା ଜାନକୀନାଥ ବୋଷ ମୃତ୍ୟୁ ଶଯ୍ୟାରେ ପଡ଼ିଛନ୍ତି । ସୁଭାଷ କାଳବିଳମ୍ବ ନକରି ଉଡ଼ାଜାହାଜ ଯୋଗେ କଲିକତାକୁ ଫେରିଆସିଲେ । ମାତ୍ର ସେ ବାପାଙ୍କୁ ଦେଖିପାରିଲେ ନାହିଁ । ଭାରତରେ ପହଞ୍ଚିବା ପରେ ତାଙ୍କୁ ଗିରଫ କରାଗଲା । କିନ୍ତୁ ପିତାଙ୍କର ଶେଷକୃତ୍ୟରେ ଯୋଗଦେବାକୁ ତାଙ୍କୁ ଅନୁମତି ମିଳିଥିଲା । ୧୯୩୫ ମସିହା ଜାନୁଆରି ୧୦ ତାରିଖରେ ସୁଭାଷ ଭିଏନା ଫେରିଗଲେ । ସେଠାରେ ତାଙ୍କର ଗଲ୍ ବ୍ଲାଡର୍ ଅପରେସନ ହୋଇ ପଥର ବାହାର କରାଗଲା । ୧୯୩୬ ମସିହାରେ ଲକ୍ଷ୍ନୌ କଂଗ୍ରେସ୍ ଅଧିବେଶନରେ ଜବାହରଲାଲ ନେହେରୁଙ୍କୁ କଂଗ୍ରେସ ସଭାପତି ଭାବେ ନିର୍ବାଚିତ କରାଯାଇଥିଲା । ସେ ସଭାପତି କାର୍ଯ୍ୟ କରୁଥିବା ସମୟରେ ସୁଭାଷଙ୍କ ଅନୁପସ୍ଥିତି ଉପଲବ୍ଧି କରିଥିଲେ । ଜବାହରଲାଲ ନେହେରୁଙ୍କ ପତ୍ନୀ କମଳା ନେହେରୁ ମଧ୍ୟ ସେହି ସମୟରେ ଭିଏନାରେ ଚିକିତ୍ସିତ ହେଉଥାନ୍ତି । ଜବାହରଲାଲ କମଳାଙ୍କୁ ତାଙ୍କ ମୃତ୍ୟୁ ଶଯ୍ୟାରେ ଭେଟିବାପାଇଁ ଭିଏନା ଯାଇଥିଲେ । ସେଠାରେ ସୁଭାଷଙ୍କ ସହିତ ତାଙ୍କର ଭେଟ ହୋଇଥିଲା । ସୁଭାଷ ନେହେରୁଙ୍କୁ କଂଗ୍ରେସ ଆଭିମୁଖ୍ୟକୁ ସାମାନ୍ୟ ପରିବର୍ତ୍ତନ କରି ଅଧିକ କ୍ରିୟାଶୀଳ କରିବାକୁ ବୁଝାଇଥିଲେ । ଜବାହରଲାଲ ମଧ୍ୟ ତାଙ୍କୁ ଭାରତକୁ ଫେରି ଆସିବାକୁ ଅନୁରୋଧ କରିଥିଲେ । ମାର୍ଚ୍ଚ ୧୯୩୬ରେ ସୁଭାଷ ଚନ୍ଦ୍ର ଭାରତକୁ ଫେରିଯିବାକୁ ନିଜର ସିଦ୍ଧାନ୍ତ ଜଣାଇବାରୁ ଇଂରେଜ ସରକାର ସିଏ ଭାରତ ଫେରିଲେ ତାଙ୍କୁ ବନ୍ଦୀ କରାଯିବ ବୋଲି ସାବଧାନ କରାଇ ଦେଇଥିଲେ । ଇଂରେଜ ସରକାରଙ୍କ ଧମକକୁ ଭ୍ରୂକ୍ଷେପ ନକରି ସୁଭାଷ ୧୯୩୬ ଏପ୍ରିଲ ୮ ତାରିଖରେ ବମ୍ବେରେ ପହଞ୍ଚିଲେ, ଯେଉଁଠି ତାଙ୍କୁ ଗିରଫ କରାଯାଇଥିଲା । ତାଙ୍କୁ ସ୍ୱାଗତ ଜଣାଇବାକୁ ବମ୍ବେରେ ଉପସ୍ଥିତ ଜନତାଙ୍କୁ ସେ ସମ୍ବୋଧନ କରି କହିଥିଲେ ଯେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ବାନାକୁ ସେମାନେ ଉଡ଼ାଇ ରଖନ୍ତୁ (Keep the flag of India's freedom flying) । ଇଂଲଣ୍ଡ ସହରରେ ସୁଭାଷଙ୍କ ଗିରଫ ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠିଥିଲା । ଭାରତର ପାର୍ଲିଆମେଣ୍ଟରେ ମଧ୍ୟ ତାଙ୍କ ଗିରଫର ପ୍ରତିବାଦ କରାଯାଇଥିଲା । କିନ୍ତୁ ସରକାର ସେଥିପ୍ରତି କର୍ଣ୍ଣପାତ କରିନଥିଲେ । ୧୯୩୭ ମସିହା ମାର୍ଚ୍ଚ ୧୭ ତାରିଖରେ ସେ ଦାର୍ଜିଲିଂରୁ ଖଲାସ ହୋଇଥିଲେ । ସୁଭାଷ ବୋଷ ବନ୍ଦୀ ଜୀବନରୁ ମୁକ୍ତି ପାଇଥିଲେ ମଧ୍ୟ ତାଙ୍କୁ ପ୍ରତ୍ୟକ୍ଷ ରାଜନୀତିରେ ୧୯୩୭ ମସିହାରେ ଅନୁଷ୍ଠିତ ହେଉଥିବା ପ୍ରଦେଶ ନିର୍ବାଚନରେ ଭାଗ ନେବାକୁ ବାରଣ କରାଯାଇଥିଲା ।

ଅପ୍ରେଲ ୬ ତାରିଖ ଦିନ ଶ୍ରଦ୍ଧାନନ୍ଦ ପାର୍କରେ ଏକ ସମ୍ବର୍ଦ୍ଧନା ସଭାର ଆୟୋଜନ ହୋଇଥିଲା । ସେହି ସଭାରେ ଶ୍ରୀ ରାମାନନ୍ଦ ଚଟ୍ଟୋପାଧ୍ୟାୟ ସଭାପତିତ୍ୱ କରିଥିଲେ ଏବଂ ସୁଭାଷ ଚନ୍ଦ୍ରଙ୍କୁ 'ଦେଶ ଗୌରବ' ଉପାଧିରେ ଭୂଷିତ କରାଯାଇଥିଲା ।

୧୯୩୭ ମସିହା ଅଗଷ୍ଟ ମାସରେ ସୁଭାଷ ଚନ୍ଦ୍ର ଆନ୍ତର୍ଜାତିକ ବ୍ୟାପାରରେ ବିଶେଷ ରୁଚି ରଖି ଦୁଇଟି ପ୍ରବନ୍ଧ ଲେଖିଥିଲେ, ଯାହାକି ତାଙ୍କର ଦୂରଦୃଷ୍ଟିକୁ ପ୍ରମାଣିତ କରେ । ଜର୍ମାନ୍ ନିଶ୍ଚିତ ଭାବରେ ୟୁରୋପର ବିଭିନ୍ନ ଦେଶକୁ ଆକ୍ରମଣ କରିବ ଏବଂ ବ୍ରିଟେନ୍ ତା'ର ବିରୁଦ୍ଧାଚରଣ କରିବ ବୋଲି ସୁଭାଷ ଏହାର ପୂର୍ବାନୁମାନ କରିପାରିଥିଲେ । ଦ୍ୱିତୀୟ ପ୍ରବନ୍ଧଟି ୧୯୩୭ ସେପ୍ଟେମ୍ବରରେ ଲେଖା ହୋଇଥିଲା, ଯେଉଁଥିରେ ସେ ଚାଇନାକୁ ସମର୍ଥନ ଜଣାଇଥିଲେ । ଚାଇନା ଜାପାନୀମାନଙ୍କଦ୍ୱାରା ଆକ୍ରମଣର ଶିକାର ହୋଇ ବହୁ କ୍ଷୟକ୍ଷତି ସହିଥିବାରୁ ତାଙ୍କୁ ସହାନୁଭୂତି ପ୍ରଦର୍ଶନ କରିଥିଲେ ।

୧୯୩୭ ମସିହା ଜୁଲାଇ ମାସରେ ପ୍ରାଦେଶିକ ନିର୍ବାଚନଗୁଡ଼ିକରେ କଂଗ୍ରେସ ଜିତିଥିଲା ଏବଂ ସାତୋଟି ପ୍ରଦେଶରେ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ସିଦ୍ଧାନ୍ତ ଗ୍ରହଣ କରିଥିଲା । ସେହି ପ୍ରଦେଶଗୁଡ଼ିକ ହେଲା ସୀମାନ୍ତ ପ୍ରଦେଶ, ଯୁକ୍ତ ପ୍ରଦେଶ, ବିହାର, ଓଡ଼ିଶା, ମଧ୍ୟପ୍ରଦେଶ, ବମ୍ବେ ପ୍ରେସିଡେନ୍ସି ଓ ମାନ୍ଦ୍ରାଜ ପ୍ରେସିଡେନ୍ସି । ବଂଗଳାରେ ମନ୍ତ୍ରିସଭା ଗଠନ କରିବା ସମ୍ଭବପର ହୋଇପାରି ନଥିଲା । ମହାତ୍ମା ଗାନ୍ଧି ଏହି ଅବସରରେ ସୁଭାଷ ବୋଷଙ୍କୁ ୧୯୩୮ ମସିହାରେ କଂଗ୍ରେସର ସଭାପତି ଭାବେ ଦାୟିତ୍ୱ ଗ୍ରହଣ କରିବାପାଇଁ ସମ୍ମତି ପ୍ରଦାନ କରିବାକୁ ଅନୁରୋଧ ଜଣାଇଥିବାରୁ ସୁଭାଷ ସମ୍ମତି ଦେଇଥିଲେ । ସୁଭାଷ ବୋଷ କଂଗ୍ରେସ ସଭାପତି ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ନଭେମ୍ବର ୧୯୩୭ରେ ପୁନର୍ବାର ୟୁରୋପ ଗସ୍ତରେ ଯାଇଥିଲେ ।

ଭିଏନାରେ ଥିବା ସମୟରେ ୧୯୩୪ ମସିହା ଜୁନ୍ ମାସରେ ଜଣେ ସୁନ୍ଦରୀ ଯୁବତୀ ଏମିଲି ଶେଙ୍କେଲଙ୍କ ସହିତ ସୁଭାଷଙ୍କର ସାକ୍ଷାତ ହୋଇଥିଲା ଏବଂ ଦୁଇଜଣ ପରସ୍ପରକୁ ଭଲପାଇ ବସିଲେ । ୧୯୩୭ ମସିହା ଡିସେମ୍ବର ମାସରେ ସୁଭାଷ ତାଙ୍କୁ ଗୋପନୀୟ ଭାବରେ ବିବାହ କରିଥିଲେ ଏବଂ ୧୯୪୨ ମସିହା ନଭେମ୍ବର ମାସରେ ତାଙ୍କର କନ୍ୟା ସନ୍ତାନ ଜନ୍ମ ହୋଇଥିଲା, ଯାହାର ନାମ ଅନୀତା ରଖାଯାଇଥିଲା । ସୁଭାଷ ବୋଷ ୧୯୩୪ ମସିହାରୁ ୧୯୪୨ ମସିହା ମଧ୍ୟରେ ଲେଖିଥିବା ୧୬୨ଟି ଚିଠି ଓ ଏମିଲି ଶେଙ୍କେଲଙ୍କର ୧୮ଟି ଚିଠି ଏକ ସଂକଳନରେ ପ୍ରକାଶିତ ହୋଇଛି ।

୧୯୪୩ ମସିହାରେ ତାଙ୍କ ଭାଇ ଶରତ ବୋଷଙ୍କ ପାଖକୁ ଏକ ହୃଦୟସ୍ପର୍ଶୀ ଚିଠି ଲେଖିଥିଲେ ଯେ, ସେ ଭିଏନାରେ ବିବାହ କରିଛନ୍ତି ଏବଂ ତାଙ୍କର ଗୋଟିଏ ଝିଅ ଜନ୍ମ ହୋଇଛି । ସାରାଜୀବନ ସେ(ଶରତ)ଯେପରି ତାଙ୍କୁ(ସୁଭାଷଙ୍କୁ) ସ୍ନେହ ଶ୍ରଦ୍ଧା ପ୍ରଦର୍ଶନ କରିଛନ୍ତି



**ପତ୍ନୀ ଏମିଲ୍‌ଙ୍କ ସହ ସୁଭାଷ**

ଯଦି ସେ ଚାଲିଯାନ୍ତି, ତେବେ ତାଙ୍କ ସ୍ତ୍ରୀ ଓ ଝିଅକୁ ସେହିଭଳି ସ୍ନେହ କରିବେ । ୧୯୪୮ ମସିହାରେ ଶରତ ଚନ୍ଦ୍ର ବୋଷ ସପରିବାର ଏମିଲି ଓ ସୁଭାଷଙ୍କ କନ୍ୟା ଅନୀତାଙ୍କୁ ଦେଖିବାକୁ ଭିଏନା ଯାଇଥିଲେ । ଅଳ୍ପ କିଛି ଦିନ ସେଠାରେ ଅବସ୍ଥାନ ସମୟରେ ଶରତ ଚନ୍ଦ୍ର ବୋଷଙ୍କ ପରିବାର ସହିତ ଏମିଲି ଓ ଅନୀତା ଘନିଷ୍ଠ ଭାବରେ ଯୋଡ଼ି ହୋଇଯାଇଥିଲେ । ଶରତ ଚନ୍ଦ୍ର ବୋଷଙ୍କର ଯଦି ଅସମୟରେ ମୃତ୍ୟୁ ହୋଇନଥାନ୍ତା ତାହାହେଲେ ଏମିଲି ଓ ଅନୀତା ଆସି କଲିକତାରେ ରହିଥାନ୍ତେ । ୟୁରୋପରେ ଥାଇ ମଧ୍ୟ ଏମିଲି ସୁଭାଷଙ୍କ ପରିବାରର ଟିକିନିଖି ଖବର ରଖୁଥିଲେ । ସେ ଦ୍ୱିତୀୟ ବିବାହ କରି ନଥିଲେ । ୧୯୯୬ ମସିହା ମାର୍ଚ୍ଚ ମାସରେ ଜର୍ମାନୀରେ ସେ ଇହଲୀଳା ସମ୍ବରଣ କରିଛନ୍ତି । ଅନୀତାଙ୍କୁ ଦୁଇ ମାସ ହୋଇଥିବା ବେଳେ ସୁଭାଷ ତାଙ୍କୁ ଛାଡ଼ି ଚାଲିଯାଇଥିଲେ । ବାପ ଝିଅର ସାକ୍ଷାତ ଦ୍ୱିତୀୟବାର ହୋଇନାହିଁ । କିନ୍ତୁ ସୁଭାଷଙ୍କ ଝିଅ ବୋଲି ଅନୀତା ସଦାସର୍ବଦା ଗର୍ବ କରନ୍ତି । ୧୯୬୧ ମସିହାରେ ଅନୀତା ଭାରତକୁ ଆସି ପିତାଙ୍କ ଜନ୍ମସ୍ଥାନ କଟକ ସହର ପରିଦର୍ଶନ କରିଥିଲେ । ସେ ବର୍ତ୍ତମାନ ସ୍ୱାମୀ, ପୁତ୍ର, କନ୍ୟାଙ୍କ ସହିତ ଜର୍ମାନୀରେ ଅବସ୍ଥାନ କରୁଛନ୍ତି ।

୧୯୩୭ ମସିହାରେ ୟୁରୋପ ଗସ୍ତରେ ସୁଭାଷ ୬ ସପ୍ତାହ ଅଷ୍ଟ୍ରିଆର ବାଦ୍‌ଗେଷ୍ଟାଇନ୍‌ରେ ବିତାଇବା ପରେ ୧୯୩୮ ମସିହା ଜାନୁଆରି ମାସ ପ୍ରାରମ୍ଭରେ



**୧୯୪୮ରେ ଭିଏନାଠାରେ ସୁଭାଷଙ୍କ ପରିବାର । ବସିଛନ୍ତି ଶରତବୋଷଙ୍କ ସ୍ତ୍ରୀ ବିଭାବତୀ, ପୁଅ ଶିଶିର, ଶିଶିରଙ୍କ କୋଳରେ ଅନୀତା ଓ ଶରତ ବୋଷ । ଛିଡ଼ା ହୋଇଛନ୍ତି ଶରତଙ୍କ କନ୍ୟା ରୋମା, ସୁଭାଷଙ୍କ ପତ୍ନୀ ଏମିଲି ଓ ରୋମାଙ୍କ ଭଉଣୀ ଚିତ୍ରା ।**

---

ସ୍ୱଳ୍ପସମୟପାଇଁ ଇଂଲଣ୍ଡ ଗସ୍ତରେ ଯାଇଥିଲେ। ସେଠାରେ ସେ କ୍ଲିମେଣ୍ଟ ଅଟଲି, ଆରନେଷ୍ଟ ବେଭିନ୍ ଓ ସାର ଷ୍ଟାଫୋର୍ଡ କ୍ରିପ୍‌ସଙ୍କ ସହିତ ସାକ୍ଷାତ କରିଥିଲେ। ବ୍ରିଟିଶ କମ୍ୟୁନିଷ୍ଟ ପାର୍ଟିର ବିଖ୍ୟାତ ଲେଖକ ରଜନୀ ପାମ୍ ଦତ୍ତଙ୍କ ସହିତ ମଧ୍ୟ ତାଙ୍କର ସାକ୍ଷାତ ହୋଇଥିଲା ଏବଂ ଜାତୀୟ କଂଗ୍ରେସ ଭବିଷ୍ୟତରେ କିଭଳି ଗଣ ଆନ୍ଦୋଳନ କରିବ ଓ ତା'ର ଉଦ୍ଦେଶ୍ୟ ସଂପର୍କରେ ସେ କହିଥିଲେ ଯେ ପ୍ରଥମେ ରାଜନୈତିକ ସ୍ୱାଧୀନତା ହାସଲ ହେବ ଓ ଦ୍ୱିତୀୟରେ ଏକ ସାମ୍ୟବାଦ ଶାସନ ପ୍ରତିଷ୍ଠା କରାଯିବ।

୧୯୩୮ ମସିହା ଜାନୁଆରି ୧୫ ତାରିଖରେ ଭାରତ ଷ୍ଟୁଡେଣ୍ଟ ୟୁନିୟନ, ଫେଡେରେସନ ଅଫ୍ ଇଣ୍ଡିଆନ୍ ଷ୍ଟୁଡେଣ୍ଟସ, ମିଲୋନ ଷ୍ଟୁଡେଣ୍ଟସ୍ ଆସୋସିଏସନ୍, ଲଣ୍ଡନ ମଜଲିସ୍, ସୋସାଇଟି ଇନ୍ ଗ୍ରେଟ୍ ବ୍ରିଟେନ୍ ଆଣ୍ଡ୍ ଆୟରଲ୍ୟାଣ୍ଡ ପ୍ରଭୃତିର ସଭ୍ୟମାନଙ୍କୁ ୧୧୨, ଗାଓ୍ୱାର ଷ୍ଟ୍ରିଟ୍‌ରେ ଏକ ସଭାରେ ସୁଭାଷଚନ୍ଦ୍ର କହିଥିଲେ, ତୁମ୍ଭମାନଙ୍କ ମଧ୍ୟରୁ ଯେଉଁମାନେ ଲେଖକ, ଗ୍ରନ୍ଥକାର ବା କବି ହେବାପାଇଁ ଆଗ୍ରହୀ ସେମାନେ କାରାଜୀବନକୁ ଶିକ୍ଷର ଉପାଦାନ ବିବେଚନା କରି ମୋ ପରି ଜେଲ୍ ଯିବାକୁ ଚେଷ୍ଟାକର। ସ୍ୱାଧୀନତାର ରୂପ କିପରି ? ସ୍ୱାଧୀନତାର ବାସ୍ତବ ଶତ୍ରୁ କିଏ ? କିପରି ଭାବରେ ଏହି ଶତ୍ରୁମାନଙ୍କ ସହ

ସଂଗ୍ରାମ କରିବାକୁ ହେବ, ସେ ସମ୍ପର୍କରେ ମନ୍ତବ୍ୟ ପ୍ରଦାନ କରି ଏହି ଆଜନ୍ମ ବିଦ୍ରୋହୀ ପୁରୁଷ ଘୋଷଣା କରି କହିଥିଲେ, ଏହି ଦେଶରେ ତୁମେ ଯେଉଁମାନେ ରହିଛ, ତୁମ୍ଭମାନଙ୍କୁ ଚିନ୍ତା କରିବାକୁ ହେବ ଯେ ଦେଶର ମଣିଷଙ୍କୁ କେଉଁ ଉପାୟରେ ମୁକ୍ତି ପ୍ରଦାନ କରାଯାଇପାରେ ? ସମସ୍ତ ବିଷୟରେ ଯେପରି ସେମାନଙ୍କୁ ମୁକ୍ତି ଦିଆଯାଏ, ରାଜନୈତିକ ମୁକ୍ତି ସହିତ ଅର୍ଥନୈତିକ ସ୍ୱାଧୀନତା ଦେବାକୁ ହେବ । ଏହାର ଅର୍ଥ ଯଦି ହୁଏ ଜମିଦାର ପୁଞ୍ଜିପତି ଅଭିଜାତ ଶ୍ରେଣୀ ବା ତଥାକଥିତ ଉଚ୍ଚବର୍ଣ୍ଣ ବିରୁଦ୍ଧରେ ସଂଗ୍ରାମ କରିବାକୁ, ତେବେ ସେଥିପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ ।

## କଂଗ୍ରେସ ସଭାପତି ଭାବରେ କାର୍ଯ୍ୟ

୧୯୩୮ ମସିହା ଜାନୁଆରି ମାସ ୧୮ ତାରିଖରେ କନୱେ ହଲ୍‌ଠାରେ ବରିଷ୍ଠ ଶ୍ରମିକ ନେତା ମିଷ୍ଟର ଜର୍ଜ ଲାନ୍ସବେରୀଙ୍କ ଅଧ୍ୟକ୍ଷତାରେ ଏକ ବିରାଟ ସଭାର ଆୟୋଜନ କରାଯାଇ ସୁଭାଷ ହରିପୁର କଂଗ୍ରେସର ସଭାପତି ଭାବେ ବିନା ପ୍ରତିଦ୍ୱନ୍ଦ୍ୱିତାରେ ନିର୍ବାଚିତ ହୋଇଥିବାରୁ ତାଙ୍କୁ ସମ୍ବର୍ଦ୍ଧନା ଦିଆଯାଇଥିଲା । ମିଷ୍ଟର ଜର୍ଜ ଲାନ୍ସବେରୀ ଏହି ସଭାରେ ଭାଷଣ ଦେଇ ଆଶା ପ୍ରକାଶ କରିଥିଲେ ଯେ ସୁଭାଷଙ୍କର ସଭାପତିତ୍ୱ କାଳରେ ଭାରତର ସ୍ୱାଧୀନତା ହାସଲ ଦିଗରେ ଦୃଢ଼ ପଦକ୍ଷେପମାନ ଗୃହୀତ ହେବ । ସମ୍ବର୍ଦ୍ଧନାର ଉତ୍ତର ଦେଇ ସୁଭାଷ କହିଥିଲେ, ଶ୍ରମିକ ଦଳ ଭାରତକୁ ବାସ୍ତବ କ୍ଷେତ୍ରରେ ସାହାଯ୍ୟ କରିପାରିବ, ଏ ସଂପର୍କରେ ଥିବା ଧାରଣାରେ ଭାରତୀୟଙ୍କ ମୋହଭଂଗ ହୋଇଛି । ତଥାପି ସେ ବାହାର ଦେଶମାନଙ୍କ ସହିତ ଯୋଗାଯୋଗ ସ୍ଥାପନ କରିବାରେ ବିଶ୍ୱାସୀ । ଭାରତ ବିଚ୍ଛିନ୍ନ ହୋଇ ରହିପାରିବ ନାହିଁ । ୧୯୩୮ ମସିହା ଜାନୁଆରି ୨୩ ତାରିଖରେ ସୁଭାଷ ତାଙ୍କର ୪୧ତମ ଜନ୍ମଦିନରେ ଭାରତ ଫେରିଆସିଥିଲେ ।

୧୯୩୮ ମସିହା ଫେବୃଆରି ୧୯ ତାରିଖ ଦିନ ଜାତୀୟ କଂଗ୍ରେସର ୫୧ତମ ଖୋଲା ଅଧିବେଶନ ଗୁଜୁରାଟର ତାପ୍ତି ନଦୀ କୂଳରେ ଏକ ଗ୍ରାମୀଣ ଅଞ୍ଚଳ ହରିପୁରାଠାରେ ଅନୁଷ୍ଠିତ ହୋଇଥିଲା । ସେଥିରେ ସୁଭାଷ ଚନ୍ଦ୍ର ବୋଷ ସଭାପତିତ୍ୱ କରିଥିଲେ ।

ସ୍ୱାଧୀନତା ଆନ୍ଦୋଳନର ଜଣେ ବରିଷ୍ଠ ନେତା ସ୍ୱର୍ଗତଃ ବିଠଲ ଭାଇ ପଟେଲଙ୍କ ସ୍ମୃତିକୁ ଉଦ୍‌ଜୀବିତ କରି ତାଙ୍କ ପ୍ରତି ଶ୍ରଦ୍ଧା ନିବେଦନ ଜଣାଇ ଅଧିବେଶନ ହେଉଥିବା ଅଂଚଳଟିକୁ 'ବିଠଲ ନଗର' ନାମରେ ନାମିତ କରାଯାଇଥିଲା । ସୁଭାଷ ବୋଷଙ୍କୁ ୫୧ ଯୋଡ଼ା ବଳଦ ଟାଣୁଥିବା ଏକ ସୁସଜ୍ଜିତ ରଥରେ ବସାଇ ବିଠଲ ନଗରର ସଭା ମଣ୍ଡପକୁ ନିଆଯାଇଥିଲା । ସୁଭାଷ ସଭାମଣ୍ଡପ ଆଡ଼କୁ ଅଗ୍ରସର ହେଉଥିବା ଅବସରରେ ଅନ୍ୟୂନ ଦୁଇ

ଲକ୍ଷ ଲୋକ ଏକ ବିରାଟ ଶୋଭାଯାତ୍ରାରେ ତାଙ୍କୁ ପାଛୋଟି ନେଇଥିଲେ । ସୁଭାଷ ବୋଷଙ୍କର ଅସୀମ ତ୍ୟାଗ, ବନ୍ଦୀ ଜୀବନ, ୟୁରୋପର ବିଭିନ୍ନ ଦେଶରେ ଭାରତବାସୀଙ୍କ ଦୁର୍ଦ୍ଦଶା ବର୍ଣ୍ଣନା ତାଙ୍କୁ ଦେଶବାସୀଙ୍କ ହୃଦୟରେ ପ୍ରିୟ ନେତାର ଆସନ ଦେବାରେ ସକ୍ଷମ କରାଇଥିଲା । ଜାତୀୟ କଂଗ୍ରେସର ସେ ସଭାପତି ହୁଅନ୍ତୁ, ସେଥିପାଇଁ ଦେଶର ବିଭିନ୍ନ ସ୍ଥାନରେ ସଭାସମିତିମାନ ଆୟୋଜିତ ହୋଇଥିଲା । ଏହି ସଭାପତି ପଦପାଇଁ ପୂର୍ବରୁ ପ୍ରାର୍ଥୀ ଥିବା ଖାଁ ଅବଦୁଲ୍ ଗଫୁର ଖାଁ, ଜବାହରଲାଲ ନେହେରୁ ଓ ମୌଲାନା ଆବୁଲ କାଲାମ ଆଜାଦ ସେମାନଙ୍କ ନାମ ପ୍ରତ୍ୟାହାର କରିନେଇଥିଲେ । ତାଙ୍କୁ ଗାନ୍ଧିଜୀ ମଧ୍ୟ ସମର୍ଥନ କରୁଥିଲେ । ଗାନ୍ଧିଜୀ ମନେ ମନେ ଭାବୁଥିଲେ ଯେ ସୁଭାଷ ଚନ୍ଦ୍ର କଂଗ୍ରେସ ସଭାପତି ପଦ ପାଇବା ପରେ ସେ ନମ୍ର ହୋଇଯିବେ ଓ ତାଙ୍କ ମତକୁ ଗ୍ରହଣ କରିନେବେ । କିନ୍ତୁ ସୁଭାଷ କଂଗ୍ରେସ ସଂଗଠନକୁ ମଜବୁତ୍ ଓ ଲଢୁଆ କରିବାକୁ ମନ ସ୍ଥିର କରିନେଇଥିଲେ । ଜବାହରଲାଲ ନେହେରୁଙ୍କଠାରୁ କଂଗ୍ରେସ ସଭାପତି ଭାର ଗ୍ରହଣ କରିବା ପରେ ୧୯୩୮ ଫେବ୍ରୁଆରି ୧୯ ତାରିଖ ଦିନ ସେ ସଭାପତି ଭାବରେ ତାଙ୍କର ଯେଉଁ ବକ୍ତବ୍ୟ ପ୍ରଦାନ କରିଥିଲେ ତାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ କହିଥିଲେ ଯେ, ଭାରତର ପ୍ରଧାନ ସମସ୍ୟାଗୁଡ଼ିକ ହେଉଛି ଦାରିଦ୍ର୍ୟ ଦୂରୀକରଣ, ଶିକ୍ଷାର ପ୍ରସାର, ଏକ ରୋଗମୁକ୍ତ ସମାଜ ଓ ସାମ୍ୟବାଦ ଢାଞ୍ଚାରେ ବିଜ୍ଞାନସମ୍ମତ ଉତ୍ପାଦନ ଓ ବଣ୍ଟନ । ସେ ମଧ୍ୟ କହିଥିଲେ ଯେ, ପୃଥିବୀର କୌଣସି ଶକ୍ତି ଭାରତକୁ ପରାଧୀନ କରି ରଖିପାରିବ ନାହିଁ । ସେ ଇଂରେଜ ସରକାରଙ୍କର ଭାରତରେ 'ଡିଭାଇଡ୍ ଆଣ୍ଡ ରୁଲ୍' ଓ ସାଂପ୍ରଦାୟିକ ଭେଦଭାବ ସୃଷ୍ଟିକୁ ତୀବ୍ର ସମାଲୋଚନା କରିଥିଲେ । କଂଗ୍ରେସ ନେତୃତ୍ୱରେ ସବୁ ଶ୍ରେଣୀର ଲୋକ, ବିଶେଷକରି ସଂଖ୍ୟାଲଘୁ ସଂପ୍ରଦାୟର ସ୍ୱାର୍ଥ ସୁରକ୍ଷିତ ରହିବ- ଏକଥା ସେ ଘୋଷଣା କରିଥିଲେ । ତାଙ୍କର ୩ ଘଣ୍ଟାର ସାରଗର୍ଭକ ଭାଷଣ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଥିଲା । ଭୂସଂସ୍କାର, ଜଳସେଚନ ଆଦି କାର୍ଯ୍ୟକ୍ରମଦ୍ୱାରା କୃଷିକୁ ଗୁରୁତ୍ୱ ଦିଆଯିବାକୁ ସେ ଘୋଷଣା କରିଥିଲେ । ଶିଳ୍ପାୟନ ସଂଗେ ସଂଗେ ଶ୍ରମିକମାନଙ୍କର ସ୍ୱାର୍ଥକୁ ଗୁରୁତ୍ୱ ଦିଆଯିବା ହିଁ ହେଉଛି କଂଗ୍ରେସର ଆଭିମୁଖ୍ୟ ବୋଲି ସେ ସୂଚାଇଥିଲେ । ସଭାପତି ଭାଷଣରେ ଉପସଂହାରରେ ସେ କହିଥିଲେ ଯେ ଆମମାନଙ୍କର ସଂଗ୍ରାମ କେବଳ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ଉଦ୍ଦିଷ୍ଟ ନୁହେଁ, ସମଗ୍ର ବିଶ୍ୱ-ସାମ୍ରାଜ୍ୟବାଦ ବିରୋଧରେ ଏହା ଉଦ୍ଦିଷ୍ଟ । ବିଶ୍ୱ-ସାମ୍ରାଜ୍ୟବାଦକୁ ଧ୍ୱଂସ କରିବାର ଉପାୟ ହେଉଛି ବ୍ରିଟିଶ୍ ସାମ୍ରାଜ୍ୟବାଦର ବିଲୋପ ସାଧନ କରିବା । ତେଣୁ ଆମେ ଯେଉଁ ସଂଗ୍ରାମ କରୁଛେ, ତାହା କେବଳ ଭାରତ ପାଇଁ ନୁହେଁ, ବିଶ୍ୱର ସମସ୍ତଙ୍କ ପାଇଁ । ଭାରତବର୍ଷର ମୁକ୍ତିର ଅର୍ଥ ହେଉଛି ମାନବଜାତିର ମୁକ୍ତି । ବନ୍ଦେ ମାତରମ୍ ।



କଂଗ୍ରେସ ସଭାପତି ହେବା ପରେ ଗାନ୍ଧିଜୀ ଓ ବଲ୍ଲଭ ଭାଇଙ୍କ ସହ ସୁଭାଷ (୧୯୩୮)

ଭାରତ ନିଜପାଇଁ ଲଢୁନି, ସମଗ୍ର ମାନବ ଜାତିପାଇଁ ଲଢୁଛି । ସୁଭାଷ କଂଗ୍ରେସର ସଭାପତି ଥିବା ସମୟରେ ଆଚାର୍ଯ୍ୟ କୃପାଳିନୀ, ଯିଏ କି ଗାନ୍ଧିଜୀଙ୍କର ପଟ୍ଟଶିଷ୍ୟ, ସେ ସୁଭାଷଙ୍କର ସବୁ କାର୍ଯ୍ୟରେ ପ୍ରତିବନ୍ଧକ ସୃଷ୍ଟି କଲେ । ବିଶେଷକରି ବଂଗଳାରେ କୃଷକ ପ୍ରଜାଦଳ ଓ ମୁସଲିମ୍ ଲିଗ୍‌ର ମିଳିତ ମନ୍ତ୍ରିମଣ୍ଡଳକୁ ସୁଭାଷ ଭାଙ୍ଗିବାପାଇଁ ଚେଷ୍ଟା କରୁଥାନ୍ତି । ତାଙ୍କର ଲକ୍ଷ୍ୟ ଥିଲା, କୃଷକ ପ୍ରଜାଦଳ କଂଗ୍ରେସ ସହିତ ମିଶି ମନ୍ତ୍ରିମଣ୍ଡଳ ଗଠନ କରୁ । କିନ୍ତୁ ତାଙ୍କର ଏଭଳି ପ୍ରଚେଷ୍ଟାକୁ ଗାନ୍ଧିଜୀ ବିରୋଧ କରୁଥିଲେ । ଯଦି ସୁଭାଷଙ୍କୁ ଗାନ୍ଧିଜୀ ସମର୍ଥନ କରିଥାନ୍ତେ, ତେବେ କଂଗ୍ରେସ-କୃଷକ ପ୍ରଜାଦଳର ମନ୍ତ୍ରିମଣ୍ଡଳ ଗଠନ କରିବା ସମ୍ଭବ ହୋଇଥାନ୍ତା ଏବଂ ମୁସଲିମ୍ ଲିଗ୍ ଶାସନ କ୍ଷମତାରୁ ଅପସରି ଯାଇଥିଲେ ଆପେ ଆପେ ଦୁର୍ବଳ ହୋଇଯାଇଥାନ୍ତା । ସୁଭାଷଙ୍କର ଦୂରଦୃଷ୍ଟିସମ୍ପନ୍ନ ଚିନ୍ତାଧାରାକୁ ଗାନ୍ଧି ବିରୋଧ କରି ନ ଥିଲେ ସ୍ୱାଧୀନତା ପାଇବା ବେଳେ ବଂଗଳାରେ ଯେଉଁ ରକ୍ତପାତ ଘଟିଲା ତାହା ହୋଇନଥାନ୍ତା ।

ହରିପୁରା କଂଗ୍ରେସ ଅଧିବେଶନରେ ପ୍ରଥମରେ ସୁଭାଷ ମୋତିଲାଲ ନେହେରୁଙ୍କ ପତ୍ନୀ ସ୍ୱରୂପାରାଣୀ ନେହେରୁ, ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ଜଗଦୀଶ ଚନ୍ଦ୍ର ବୋଷ ଓ ସାହିତ୍ୟିକ ଶରତ ଚନ୍ଦ୍ର ଚାଟାର୍ଜୀଙ୍କର ମୃତ୍ୟୁରେ ଶୋକ ପ୍ରସ୍ତାବ ଆଗତ କରିଥିଲେ । ସେ



କଂଗ୍ରେସ୍ ସଭାପତି ସୁଭାଷ

ଭାରତର ସ୍ୱାଧୀନତା ସଂଗ୍ରାମରେ ଜାତୀୟ କଂଗ୍ରେସ ପତାକା ତଳେ ଦେଶର ସମସ୍ତ ଲୋକ ଏକତ୍ରିତ ହେବାକୁ ଆହ୍ୱାନ ଜଣାଇଥିଲେ । ଭାରତର ସ୍ୱାଧୀନତା ପାଇଁ, ଏକତା ରକ୍ଷାପାଇଁ ମହାତ୍ମା ଗାନ୍ଧିଙ୍କର ନେତୃତ୍ୱର ଗୁରୁତ୍ୱ ସଂପର୍କରେ ସେ ସମସ୍ତଙ୍କୁ ଅବହିତ କରାଇଥିଲେ ।

ସଭାପତି ଦାୟିତ୍ୱ ଗ୍ରହଣ କରିବା ପରେ ସେ ଭାରତର ବିଭିନ୍ନ ଅଞ୍ଚଳ ଗସ୍ତ କରି ବାମପନ୍ଥୀ ଚିନ୍ତାଧାରାର ନେତାମାନଙ୍କୁ ଶ୍ରମିକ, କୃଷକ, ମେହନତି ମଣିଷମାନଙ୍କୁ କଂଗ୍ରେସର ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ସଂଗ୍ରାମରେ ଅବତୀର୍ଣ୍ଣ ହେବାକୁ ନିବେଦନ କରିଥିଲେ । ସେ ସମସ୍ତଙ୍କୁ ଆଗୁଆ ସତର୍କବାଣୀ ଶୁଣାଇଥିଲେ ଯେ ପୃଥିବୀରେ ଯୁଦ୍ଧ ମାଡ଼ିଆସୁଛି । ଭାରତବାସୀ ନିଜେ କିଭଳି ସୁରକ୍ଷିତ ରହିବେ ସେଥିପାଇଁ ବ୍ୟବସ୍ଥା ଗ୍ରହଣ କରିବାକୁ ପଡ଼ିବ । କଂଗ୍ରେସ କର୍ମୀମାନଙ୍କୁ ଯେ କୌଣସି ଅଘଟଣକୁ ସମ୍ମୁଖୀନ ହେବାପାଇଁ ତାଲିମ ଦେବାକୁ ପଡ଼ିବ । ଗୋଟିଏ ସ୍ଥାୟୀ ସ୍ୱେଚ୍ଛାସେବକ ବାହିନୀର ଆବଶ୍ୟକତା ସଂପର୍କରେ ସେ ସମସ୍ତଙ୍କୁ ବୁଝାଇଥିଲେ । ଏଥିପାଇଁ ଦେଶବାସୀଙ୍କୁ ପ୍ରସ୍ତୁତ କରିବାରେ ଲାଗିପଡ଼ିଲେ । ସେ ଗୋଟିଏ ଦୃଢ଼, ଧର୍ମନିରପେକ୍ଷ, ଐକ୍ୟବାଦୀ ଭାରତ ପ୍ରତିଷ୍ଠା କରିବାକୁ ଚେଷ୍ଟିତ ଥିଲେ । ସୁଭାଷଙ୍କର ବଳିଷ୍ଠ ନେତୃତ୍ୱ, ତାଙ୍କ ଚିନ୍ତାଧାରା ଯୁବସମାଜ ବିଶେଷକରି ଛାତ୍ରମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା ।

## ଗାନ୍ଧିଜୀଙ୍କ ସହିତ ମତାନ୍ତର

ହରିପୁରା କଂଗ୍ରେସ ଅଧିବେଶନରେ ଗୋଟିଏ ଯୁଗାନ୍ତକାରୀ ପ୍ରସ୍ତାବ ହେଉଛି ଦେଶପାଇଁ 'ଯୋଜନା କମିଶନ୍' ଗଠନ କରିବାର ପ୍ରସ୍ତାବ । ଦେଶରୁ ଦାରିଦ୍ର୍ୟ ଦୂର

କରିବା, ଶିଳ୍ପସମୃଦ୍ଧ କରିବା, ଅର୍ଥନୀତିକୁ ସୁଦୃଢ଼ କରିବା କେବଳ ଏକ ବୈଜ୍ଞାନିକ ପଦ୍ଧତିରେ ସମ୍ଭବ ବୋଲି ସେ ଦୃଢ଼ତାର ସହିତ କହିଥିଲେ । ଏହି ଯୋଜନା କମିଶନର ଆନୁଷ୍ଠାନିକ ଉଦ୍‌ଘାଟନ ଡିସେମ୍ବର ୧୯୩୮ରେ ବମ୍ବେଠାରେ ହୋଇଥିଲା ଏବଂ ଜବାହରଲାଲ ନେହେରୁ କମିଶନର ଅଧ୍ୟକ୍ଷ ଭାବରେ ମନୋନୀତ ହୋଇଥିଲେ । ଜର୍ମାନୀ ଓ ଜାପାନ୍ ପରି ଶିଳ୍ପନୀତି ଭାରତରେ ପ୍ରଚଳନ କରିବା ତାଙ୍କର ଲକ୍ଷ୍ୟ ଥିଲା । କିନ୍ତୁ ଗାନ୍ଧିଜୀ ଏହି ଚିନ୍ତାଧାରାକୁ ସମର୍ଥନ କଲେ ନାହିଁ ।

ସୁଭାଷଚନ୍ଦ୍ରଙ୍କର ଏହି ସବୁ କାର୍ଯ୍ୟକ୍ରମକୁ ଗାନ୍ଧିଜୀ ଓ ତାଙ୍କର ସମର୍ଥକମାନେ ପସନ୍ଦ କଲେନାହିଁ । ଗାନ୍ଧିଜୀ ୧୯୩୯ ମସିହାରେ ସୁଭାଷଚନ୍ଦ୍ର ବୋଷ କିଭଳି କଂଗ୍ରେସର ସଭାପତି ହୋଇ ନ ପାରିବେ ସେଥିପାଇଁ ଚକ୍ରାନ୍ତ କରିବାରେ ଲାଗିପଡ଼ିଲେ । ଏହି ସମୟରେ କିନ୍ତୁ ରବୀନ୍ଦ୍ରନାଥ ଠାକୁର ସୁଭାଷଙ୍କୁ ସମର୍ଥନ ଜଣାଇଥିଲେ । ସେ ଗାନ୍ଧିଜୀଙ୍କୁ ଚିଠି ଲେଖି ସୁଭାଷଙ୍କ କାର୍ଯ୍ୟର ତାରିଫ କରିଥିଲେ । ସେ ଜବାହରଲାଲ ନେହେରୁଙ୍କୁ ଶାନ୍ତିନିକେତନକୁ ନିମନ୍ତ୍ରଣ କରି ତାଙ୍କ ସହିତ ଆଲୋଚନା କରି ମତବ୍ୟକ୍ତ କରିଥିଲେ ଯେ ସୁଭାଷଙ୍କ କାର୍ଯ୍ୟାବଳୀ ଦେଶର ବିକାଶ ଘଟାଇବ । ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଉଛି, ସୁଭାଷଙ୍କ ପ୍ରଚେଷ୍ଟାରେ ଆଣ୍ଡାମାନ ଦ୍ୱୀପରୁ ରାଜନୈତିକ ବନ୍ଦୀମାନଙ୍କୁ ଦେଶକୁ ପଠାଇବାର ବ୍ୟବସ୍ଥାକୁ ବଂଗଳାର ସ୍ୱରାଷ୍ଟ୍ରମନ୍ତ୍ରୀ ନାଜିମ୍ ଉଦ୍ଦିନ ସମ୍ମତି ପ୍ରଦାନ କରିଥିଲେ ।

ସୁଭାଷ ଚନ୍ଦ୍ର ବୋଷ ୧୯୩୮ ମସିହା ମେ' ମାସରେ ସମସ୍ତ ପ୍ରଦେଶର ମୁଖ୍ୟମନ୍ତ୍ରୀମାନଙ୍କୁ ଡାକି ନିଜର ଅର୍ଥନୈତିକ ପରିକଳ୍ପନା ସେମାନଙ୍କ ସମ୍ମୁଖରେ ଉପସ୍ଥାପନ କରିଥିଲେ । ରବୀନ୍ଦ୍ରନାଥ ସୁଭାଷଙ୍କ କାର୍ଯ୍ୟରେ ଆନନ୍ଦିତ ହୋଇ ତାଙ୍କୁ ଶାନ୍ତିନିକେତନକୁ ନିମନ୍ତ୍ରଣ କରି ଏକ ସମ୍ବର୍ଦ୍ଧନା ସଭାର ଆୟୋଜନ କରିଥିଲେ ଏବଂ ତାଙ୍କୁ 'ଦେଶ ନାୟକ' ପଦରେ ବରଣ କରୁଛନ୍ତି ବୋଲି ଘୋଷଣା କରିଥିଲେ । ୧୯୩୮ ମସିହା ଶେଷ ବେଳକୁ ଗାନ୍ଧିଜୀ ସ୍ପଷ୍ଟ ଭାବରେ ମନ୍ତବ୍ୟ ଦେଲେ ଯେ ସୁଭାଷ ଚନ୍ଦ୍ର ବୋଷଙ୍କର ଦ୍ୱିତୀୟବାର କଂଗ୍ରେସ ସଭାପତି ପଦରେ ନିର୍ବାଚିତ ହେବା ଦେଶ ପକ୍ଷରେ କ୍ଷତିକାରକ ହେବ ।

୧୯୩୯ ମସିହାରେ କଂଗ୍ରେସର ତ୍ରିପୁରୀ ଅଧିବେଶନରେ ବିଭିନ୍ନ ପ୍ରଦେଶରୁ ସଭାପତି ପଦପାଇଁ ଯେଉଁ ନାମଗୁଡ଼ିକ ପ୍ରଣିଧାନଯୋଗ୍ୟ, ସେଗୁଡ଼ିକ ହେଲା ସୁଭାଷ ଚନ୍ଦ୍ର ବୋଷ, ମୌଲାନା ଆବୁଲ କାଲାମ ଆଜାଦ ଓ ଡକ୍ଟର ପଟ୍ଟାଭି ସୀତାରାମାୟା । ମୌଲାନା ଆବୁଲ କାଲାମ ଆଜାଦ ନିର୍ବାଚନରୁ ଓହରି ଯାଇଥିଲେ । ମୌଲାନା ଆବୁଲ କାଲାମ ଆଜାଦ ଓ କଂଗ୍ରେସ କାର୍ଯ୍ୟକାରିଣୀ କମିଟିର ଅନ୍ୟ ଛ'ଜଣ ସଦସ୍ୟ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ରାଜେନ୍ଦ୍ର ପ୍ରସାଦ, ଜୟରାମ ଦାସ ଦୌଲତ ରାମ, ଶଙ୍କର ରାଓ ଦେଓ, ଭୋଲାଭାଇ ଦେଶାଇ

ପ୍ରମୁଖ ବିବୃତି ଦେଇଥିଲେ ଯେ ପଟ୍ଟାଭି ସୀତାରାମାୟା କଂଗ୍ରେସ ସଭାପତି ପଦପାଇଁ ସଂପୂର୍ଣ୍ଣ ଯୋଗ୍ୟ ଓ ଉପଯୁକ୍ତ ବ୍ୟକ୍ତି । ଏହି ପ୍ରତିଦ୍ୱନ୍ଦ୍ୱିତାରେ ଡକ୍ଟର ମେଘନାଦ ଶାହ ଆଚାର୍ଯ୍ୟ, ପ୍ରଫୁଲ୍ଲ ଚନ୍ଦ୍ର ରାୟ, ରବୀନ୍ଦ୍ରନାଥ ଠାକୁର, ଇ.ଏମ୍.ଏସ୍. ନମ୍ବୁଦ୍ରିପଦ, ପି. ସୁନ୍ଦରାୟା, ରାମମୂର୍ତ୍ତି ପ୍ରଭୃତି ନେତୃବୃନ୍ଦ ସୁଭାଷ ବୋଷଙ୍କୁ ସମର୍ଥନ କରିଥିଲେ । ସୁଭାଷଙ୍କ ଦ୍ୱାରା ବିପ୍ଳବୀ ଯୁବକର୍ମୀ ଭାବରେ ଓଡ଼ିଶାରୁ ମନୋନୀତ ହୋଇଥିବା କାର୍ଯ୍ୟକାରୀ କମିଟି ସଦସ୍ୟ ହରେକୃଷ୍ଣ ମହତାବ ମଧ ପଟ୍ଟାଭିଙ୍କୁ ଜୟଯୁକ୍ତ କରିବାକୁ ଅନୁରୋଧ କରି ବିବୃତିମାନ ଦେଇଥିଲେ । ତତ୍କାଳୀନ ପୁନଃ ନିର୍ବାଚିତ ଓଡ଼ିଶା କଂଗ୍ରେସ ସଭାପତି ପଣ୍ଡିତ ନୀଳକଣ୍ଠ ଦାସ ସୁଭାଷଙ୍କ ବୈପ୍ଳବିକ ନୀତିକୁ ପୂର୍ଣ୍ଣ ସମର୍ଥନ ଦେଇ ତାଙ୍କ ସହକର୍ମୀଙ୍କ ସହିତ ସୁଭାଷଙ୍କୁ ସଭାପତି ପଦରେ ପୁନଃ ନିର୍ବାଚିତ କରିବାପାଇଁ ଭୋଟ ପ୍ରଦାନ କରିଥିଲେ ।

ପ୍ରତିଦ୍ୱନ୍ଦ୍ୱିତା ଡକ୍ଟର ପଟ୍ଟାଭି ସୀତାରାମାୟା ଓ ସୁଭାଷ ଚନ୍ଦ୍ର ବୋଷଙ୍କ ମଧ୍ୟରେ ଅନୁଷ୍ଠିତ ହୋଇଥିଲା । ୧୯୩୯ ମସିହା ଜାନୁଆରି ମାସ ୨୯ ତାରିଖ ଦିନ ଜାତୀୟ କଂଗ୍ରେସର ସଭାପତିପାଇଁ ନିର୍ବାଚନ ହୋଇଥିଲା । ୨୯୫୭ଟି ଭୋଟ ମଧ୍ୟରୁ ସୁଭାଷ ଚନ୍ଦ୍ର ବୋଷ ପାଇଥିଲେ ୧୫୮୦ ଓ ସୀତାରାୟମା ପାଇଥିଲେ ୧୩୭୭ ଭୋଟ । ୨୦୩ଟି ଅଧିକ ଭୋଟରେ ସୁଭାଷ ଚନ୍ଦ୍ର ବୋଷ ନିର୍ବାଚିତ ହେବା ଘୋଷଣା କରାଯାଇଥିଲା । ଦେଶର ବିଭିନ୍ନ ଅଞ୍ଚଳର ଲୋକମାନେ ସୁଭାଷ ବୋଷଙ୍କୁ ଅଭିନନ୍ଦନ ଜ୍ଞାପନ କଲେ କିନ୍ତୁ ଗାନ୍ଧିଜୀ ହରିଜନ ପତ୍ରିକାରେ ଲେଖିଲେ, ଡକ୍ଟର ପଟ୍ଟାଭି ସୀତାରାମାୟାଙ୍କର ପରାଜୟ ମୋର ପରାଜୟ । ସୁଭାଷ ଚନ୍ଦ୍ର ବୋଷ ଏକଥା ପଢ଼ିବା ପରେ ବିସ୍ମିତ ହୋଇ କହିଥିଲେ "ଏତେ ଅଳ୍ପରେ ଗାନ୍ଧିଜୀଙ୍କ ପରି ମଣିଷଙ୍କର ଧୈର୍ଯ୍ୟଚ୍ୟୁତି ଘଟିପାରେ ଏହା ତାଙ୍କର କଳ୍ପନାତୀତ ଥିଲା । ପ୍ରତିଦ୍ୱନ୍ଦ୍ୱିତା ଡକ୍ଟର ପଟ୍ଟାଭି ସୀତାରାମାୟା ଓ ସୁଭାଷ ଚନ୍ଦ୍ର ବୋଷଙ୍କ ମଧ୍ୟରେ ଅନୁଷ୍ଠିତ ହୋଇଥିଲା । ମୁଁ ମହାତ୍ମାଜୀଙ୍କୁ ଯେତେ କିଛି ସମାଲୋଚନା କରେନା କାହିଁକି ତା'ଠାରୁ ଅଧିକ ଭକ୍ତି କରେ । ସେ ଏତେ ତଳକୁ ଗଲେ କିପରି ?" ଜାତୀୟ କଂଗ୍ରେସର ଜଣେ ନିର୍ବାଚିତ ସଭାପତିଙ୍କ ବିରୁଦ୍ଧରେ ଗାନ୍ଧିଜୀଙ୍କ ଏଭଳି ମନ୍ତବ୍ୟ ଦେଶର ବୁଦ୍ଧିଜୀବୀମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ଏହିଭଳି ବିବଦମାନ ପରିସ୍ଥିତି ସୁଭାଷ ବୋଷଙ୍କୁ ବହୁ ଆଘାତ ଦେଇଥିଲା । ସୁଭାଷ ସଂକୀର୍ଣ୍ଣମନା ବ୍ୟକ୍ତି ନଥିଲେ । ଭାରତର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ଜୀବନରେ ବହୁତ ତ୍ୟାଗ ସ୍ୱୀକାର କରିଥିଲେ ।

ପଟ୍ଟାଭି ସୀତାରାମାୟଙ୍କ ପରାଜୟରେ ମୌଲାନା ଆବୁଲ କାଲାମ ଆଜାଦ, ଅବଦୁଲ ଗଫୁର, ରାଜେନ୍ଦ୍ର ପ୍ରସାଦ, ଆଚାର୍ଯ୍ୟ କୃପାଳିନୀ, ସରୋଜିନୀ ନାଇଡୁ, ଭୋଲାଭାଇ ଦେଶାଇ ଓ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲେ । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଯେ

କି ନିର୍ବାଚନ ସମୟରେ ପଟ୍ଟାଭି ସୀତାରାମାୟାଙ୍କ ସପକ୍ଷରେ ପ୍ରଚାର କରିବାରେ ନିଜର ସମସ୍ତ ଶକ୍ତି ନିୟୋଜିତ କରିଥିଲେ, ତାଙ୍କ ପରାଜୟ ଓ ଗ୍ଲାନିରେ ସେ ଅତ୍ୟନ୍ତ ମର୍ମାହତ ହୋଇପଡ଼ିଥିଲେ ।

ସୁଭାଷଚନ୍ଦ୍ର ବୋଷ ନିର୍ବାଚିତ ହେବା ପରେ ୱାର୍ଦ୍ଧା ଆଶ୍ରମକୁ ଯାଇ ମହାତ୍ମା ଗାନ୍ଧିଙ୍କୁ ସାକ୍ଷାତ କଲେ ଓ କଂଗ୍ରେସରେ ଦେଖାଦେଇଥିବା ଅସନ୍ତୋଷକୁ ଦୂର କରିବାକୁ ପଦକ୍ଷେପ ନେବାକୁ ଗାନ୍ଧିଜୀଙ୍କୁ ଅନୁରୋଧ କରିଥିଲେ । ଗାନ୍ଧିଜୀ କିନ୍ତୁ ସୁଭାଷ ବୋଷଙ୍କ ସହିତ ଅସହଯୋଗ ନୀତି ଗ୍ରହଣ କଲେ । ୧୯୩୯ ମସିହା ଫେବ୍ରୁଆରି ୧୨ ତାରିଖରେ ୱାର୍ଦ୍ଧାଠାରେ ୱାର୍କିଂ କମିଟିର ବୈଠକ ବସିବାର ନିଷ୍ପତ୍ତି ହୋଇଥିଲା । ନିଜର ଅସୁସ୍ଥତା ପାଇଁ ସୁଭାଷ ବୈଠକ ତାରିଖ ଘୁଞ୍ଚାଇବାକୁ ଅନୁରୋଧ କରିଥିଲେ, କିନ୍ତୁ ଗାନ୍ଧିଙ୍କୁ ସମର୍ଥନ କରୁଥିବା ୱାର୍କିଂ କମିଟିର ସଦସ୍ୟମାନେ ସେଥିରେ ରାଜି ହୋଇନଥିଲେ । ସୁଭାଷ ଜାତୀୟ କଂଗ୍ରେସର ସଭାପତି ହୋଇଥିଲେ ମଧ୍ୟ ତାଙ୍କ ଅନୁପସ୍ଥିତିରେ ବୈଠକ ବସିଥିଲା । ସେମାନେ ଦେଇଥିବା ଇସ୍ତଫାପତ୍ରକୁ ଗ୍ରହଣ କରିନେବାକୁ ଅଡ଼ି ବସି ଏକ ଗୁରୁତର ସଂକଟ ସୃଷ୍ଟି କଲେ । ସୁଭାଷଙ୍କୁ ଗାନ୍ଧିଜୀଙ୍କ ପାଖରେ ଆତ୍ମସମର୍ପଣ କରିବାକୁ ଏବଂ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ କାର୍ଯ୍ୟ କରିବାକୁ ଚାପ ସୃଷ୍ଟି କରିଥିଲେ । ଦେଶବାସୀ ହତବାକ୍ ହୋଇ ସୁଭାଷଙ୍କ ନିଷ୍ପତ୍ତିକୁ ଅପେକ୍ଷା କରିଥିଲେ । ଚିର ଦିନ ଅନ୍ୟାୟ ଓ ଅବିଚାର ବିରୁଦ୍ଧରେ ପ୍ରତିବାଦ କରିଆସୁଥିବା ସୁଭାଷ ଆତ୍ମସମର୍ପଣ କଲେ ନାହିଁ । ସୁଭାଷ ନିର୍ବାଚନ ମାଧ୍ୟମରେ କଂଗ୍ରେସ ୱାର୍କିଂ କମିଟି ଗଠନ କରିବାକୁ ଅନୁରୋଧ କଲେ । କିନ୍ତୁ ଗାନ୍ଧି ନାରାଜ ।

ଗାନ୍ଧିଜୀଙ୍କୁ ସମର୍ଥନ କରି କଂଗ୍ରେସ ୱାର୍କିଂ କମିଟିର ୧୨ ଜଣ ସଦସ୍ୟ ପ୍ରଥମେ ଫେବ୍ରୁଆରି ୨୨ ତାରିଖରେ ୱାର୍କିଂ କମିଟିରୁ ଇସ୍ତଫା ପ୍ରଦାନ କରିଥିଲେ । ପରେ ପରେ ଜବାହରଲାଲ ନେହେରୁ ମଧ୍ୟ ସେଥିରୁ ଇସ୍ତଫା ଦେଇଥିଲେ । ୱାର୍କିଂ କମିଟିର ସଦସ୍ୟମାନଙ୍କର ପଦତ୍ୟାଗ ଯେଉଁ ପରିସ୍ଥିତି ସୃଷ୍ଟି କଲା, ତାହା ଜାତୀୟ କଂଗ୍ରେସର ଇତିହାସରେ ଅଭୂତପୂର୍ବ ।

ମାର୍ଚ୍ଚ ମାସ ପ୍ରାରମ୍ଭରେ କଂଗ୍ରେସର ସାଧାରଣ ଅଧିବେଶନ ମଧ୍ୟ-ପ୍ରଦେଶର ଜବଲପୁର ନିକଟସ୍ଥ ତ୍ରିପୁରୀଠାରେ ଆୟୋଜିତ ହେବାର ନିଷ୍ପତ୍ତି ହୋଇଥିଲା । ସୁଭାଷ ଚନ୍ଦ୍ର ବୋଷ ସେତେବେଳେ ନିମୋନିଆ ଜ୍ୱରରେ ପୀଡ଼ିତ । ସେ ଏହି ସାଧାରଣ ଅଧିବେଶନକୁ କିଛିଦିନ ଘୁଞ୍ଚାଇ ଦେବାକୁ ଅନୁରୋଧ କରି ଚିଠି ଲେଖିଥିଲେ । ସେଥିପାଇଁ ଗାନ୍ଧିଜୀଙ୍କର ଦୃଢ଼ ସମର୍ଥକ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଅତି କଟୁ ମନ୍ତବ୍ୟ ଦେଇ କହିଥିଲେ, "ସୁଭାଷଙ୍କୁ ରାଜନୀତି ଜ୍ୱର ହୋଇଛି ଏବଂ ଏହା ଶୀଘ୍ର ଆରୋଗ୍ୟ ହେବ ନାହିଁ ।'' ୱାର୍କିଂ କମିଟିରୁ ଇସ୍ତଫା ଦେଇଥିବା ଅନ୍ୟ କେତେକ ସଦସ୍ୟ ମଧ୍ୟ ସୁଭାଷଙ୍କ ଅନୁରୋଧ ମାନିନେବାକୁ ଇଚ୍ଛୁକ ନଥିଲେ ।

ସୁଭାଷ ଚନ୍ଦ୍ର ବୋଷ ୧୦୨ ଡିଗ୍ରୀ ଜ୍ୱର ଦେହରେ ମଧ୍ୟ ମାର୍ଚ୍ଚ ୫ ତାରିଖରେ ତ୍ରିପୁରୀ ଅଭିମୁଖେ ଯାତ୍ରା କରିଥିଲେ । ତ୍ରିପୁରୀରେ ପହଞ୍ଚିବା ବେଳକୁ ତାଙ୍କୁ ୧୦୬ ଡିଗ୍ରୀ ଜ୍ୱର । ତାଙ୍କୁ ହସ୍ପିଟାଲ୍‌ରେ ଭର୍ତ୍ତି ହେବାକୁ ପଡ଼ିଥିଲା ।

ଏହି ଅଧିବେଶନ ସ୍ଥାନଟିକୁ 'ବିଷ୍ଣୁଦତ୍ତ ନଗର' ନାମରେ ନାମିତ କରାଯାଇଥିଲା । ୨୨ଟି ତୋରଣ ନିର୍ମିତ ହୋଇଥିବା ସଭା ମଣ୍ଡପକୁ ୫୨ଟି ହାତୀରେ ସୁଭାଷଙ୍କୁ ପାଛୋଟିନେବାର ବ୍ୟବସ୍ଥା ହୋଇଥିଲେ ମଧ୍ୟ ସୁଭାଷ ଷ୍ଟ୍ରେଚରରେ ବୁହାହୋଇ ସଭାସ୍ଥଳକୁ ଯାଇଥିଲେ । ସୁଭାଷଙ୍କର ଏକ ପ୍ରତିକୃତିକୁ ହାତରେ ଧରି ଜନତା ସଭାସ୍ଥଳରେ ପହଞ୍ଚିଥିଲେ । ସୁଭାଷ ଶାରୀରିକ ଅସୁସ୍ଥତା ଦୃଷ୍ଟିରୁ ତାଙ୍କ ମଝିଆ ଭାଇ ଶରତ ଚନ୍ଦ୍ର ବୋଷ ତାଙ୍କ ଲିଖିତ ଭାଷଣ ପାଠ କରିଥିଲେ । ସୁଭାଷଙ୍କ ଅଭିଭାଷଣର କିଛି ଅଂଶ ଏଠାରେ ଉଦ୍ଧାର କରିବା ସମୀଚୀନ ହେବ । "ସ୍ୱରାଜ ଲାଭପାଇଁ ଆମର ଯେଉଁ ଅଭିଯାନ ଆରମ୍ଭ ହୋଇଛି, ତାହା ବର୍ତ୍ତମାନ ଏପରି ଅନୁକୂଳ ମୁହୂର୍ତ୍ତର ସମ୍ମୁଖୀନ ହୋଇପାରିଛି; ଯାହାକି ଭାରତର ଜାତୀୟ ଇତିହାସରେ ଅଭୂତପୂର୍ବ । ବର୍ତ୍ତମାନ ଆମ୍ଭମାନଙ୍କ ପାଇଁ ଆନ୍ତର୍ଜାତିକ ପରିସ୍ଥିତି ଅତ୍ୟନ୍ତ ଉତ୍ସାହପ୍ରଦ । ଆଜିର ବିଶ୍ୱ ପରିସ୍ଥିତି ଆମ ପାଇଁ ଯେଉଁ ସୁଯୋଗର ବଳୟ ରଚନା କରିଛି, ଆମେ ତା'ର ସଦୁପଯୋଗ କରିବା ଉଚିତ । ଏ ଦିଗରେ ଆମେ ଚରମ ଆଶାବାଦୀ ।

"ବିଶ୍ୱ-ରାଜନୀତିରେ ବ୍ରିଟିଶ୍‌ମାନଙ୍କର ତଥାକଥିତ ଭୂମିକା ସେତେ ଅନୁକୂଳ ନୁହେଁ । ସେମାନେ ନିଜକୁ ସବୁଦିଗରୁ ନିରାପଦ ଭାବୁ ନାହାନ୍ତି । ଏହି ଦୁର୍ବଳ ମାନସିକ ମୁହୂର୍ତ୍ତରୁ ଆମେ କିଛି ଫାଇଦା ଉଠାଇବା ଉଚିତ । ଆମର ଜାତୀୟ ଦାବିକୁ କଠୋର ଭାବରେ ତାଙ୍କ ଉପରେ ଲଦିଦେଲେ, ସେମାନେ ନିଶ୍ଚୟ ପରିସ୍ଥିତିର ତାଡ଼ନାରେ ସବୁ ମାନିଯିବେ । ଭାରତର ମୁକ୍ତିଲାଭ କରିବାର ପଥ ସହଜ ଓ ସୁଗମ ହେବ ।

"ଆଜି ଲକ୍ଷ୍ୟ ହାସଲପାଇଁ ଭାରତବ୍ୟାପୀ ଅସହଯୋଗ ଆନ୍ଦୋଳନ ଓ ସତ୍ୟାଗ୍ରହର ଆବଶ୍ୟକତା ରହିଛି । ଇଂରେଜମାନଙ୍କ ବିରୁଦ୍ଧରେ ଏହି ଗଣ-ଆନ୍ଦୋଳନକୁ ତୀବ୍ରତର କରାଯିବା ଉଚିତ । ବ୍ରିଟିଶ ସରକାର ଏ ପ୍ରକାର ଏକ ଦେଶବ୍ୟାପୀ ଆନ୍ଦୋଳନର ସମ୍ମୁଖୀନ ହେବାପାଇଁ ବର୍ତ୍ତମାନ ପରିସ୍ଥିତିରେ ପ୍ରସ୍ତୁତ ନୁହେଁ ।

"କଂଗ୍ରେସ ଭିତରେ କେତେକ ବନ୍ଧୁ ଏହି ମତକୁ ଗ୍ରହଣ କରିପାରୁ ନାହାନ୍ତି । ସେମାନେ ଅତ୍ୟନ୍ତ ନୈରାଶ୍ୟବାଦୀ । ତାଙ୍କର ଧାରଣା, ବ୍ରିଟିଶ ସରକାରକୁ ଏ ପ୍ରକାର ଏକ ଅସୁବିଧାର ସମ୍ମୁଖୀନ କରାଇବାର ସମୟ ଏ ପର୍ଯ୍ୟନ୍ତ ଆସିନାହିଁ । ଏ ପ୍ରକାର ଚରମ ବ୍ୟବସ୍ଥା କରିବା ନିଶ୍ଚିତ ଭାବରେ ବୋକାମି ହେବ । ପରିସ୍ଥିତିକୁ ପ୍ରତ୍ୟେକ ଦିଗରୁ ଅନୁଧ୍ୟାନ କରିଥିଲେ ସେମାନେ



**ମଝିଆ ଭାଇ ଶରତ ଚନ୍ଦ୍ର ବୋଷଙ୍କ ସହ ସୁଭାଷ**

ଏପରି କହନ୍ତେ ନାହିଁ । ସେମାନେ ବାସ୍ତବ ଦୃଷ୍ଟିକୋଣରୁ ଏହା ବିଚାର କରି ନାହାନ୍ତି । ମୋ ମତରେ, ନୈରାଶ୍ୟର ତିଳେମାତ୍ର କାରଣ ନାହିଁ । ବର୍ତ୍ତମାନ ଆଠଟି ପ୍ରଦେଶରେ କଂଗ୍ରେସ କ୍ଷମତାରେ ଅଛି । ଆମ ଜାତୀୟ ଅନୁଷ୍ଠାନର ସାମର୍ଥ୍ୟ ତଥା ମହତ୍ତ୍ୱ ଯଥେଷ୍ଟ ଉଚ୍ଚରେ । ବ୍ରିଟିଶ୍-ଭାରତର ଜନ-ଆନ୍ଦୋଳନ ଯଥେଷ୍ଟ ଅଗ୍ରଗତି କରିଛି । ଆଶ୍ଚର୍ଯ୍ୟର କଥା, ଆଜି ମଧ୍ୟ ଭାରତର ଦେଶୀୟ ରାଜ୍ୟଗୁଡ଼ିକରେ ଅଭୂତପୂର୍ବ ଜାଗରଣ ସୃଷ୍ଟି ହୋଇଛି । ଏ ପ୍ରକାର ସୁଯୋଗ ଓ ପରିବେଶ ତଥା ଅନୁକୂଳତାର ଆଶୀର୍ବାଦ ଜାତୀୟ ଇତିହାସରେ ବିରଳ । ଚରମ ପଦକ୍ଷେପ ନେବାର ଏହି ମାହେନ୍ଦ୍ର ବେଳାକୁ ଛାଡ଼ିଦେବା ଆଦୌ ସଙ୍ଗତ ହେବନି । ଏ ମୁହୂର୍ତ୍ତ ସବୁବେଳେ ଆସେନା । ସମସ୍ତ ବିଭିନ୍ନତା ଭୁଲି, ଏକତାସୂତ୍ରରେ ଆବଦ୍ଧ ହୋଇ ଆମେ ଯଦି ବର୍ତ୍ତମାନ ପରିସ୍ଥିତିର ମୁକାବିଲା କରିପାରିବା, ତା'ହେଲେ ସ୍ୱରାଜଲାଭର ନିକଟବର୍ତ୍ତୀ ହୋଇପାରିବା । ଆଜି କଂଗ୍ରେସ ଆକାଶରେ ଯେଉଁ କଳାମେଘ ଦେଖାଦେଇଛି, ତାହା ଏକ ଚଲା ମେଘ; ବେଶି ସମୟ ତାହା ରହିବ ନାହିଁ ।"

ଗାନ୍ଧିଜୀ ଏହି ତ୍ରିପୁରୀ ଅଧିବେଶନରେ ଉପସ୍ଥିତ ନଥିଲେ । ସେ ଗୁଜୁରାଟର ରାଜକୋଟଠାରେ ଦେଶୀୟ ରାଜାମାନଙ୍କର କୃଷକମାନଙ୍କ ଉପରେ ଅତ୍ୟାଚାର ବିରୁଦ୍ଧରେ ସତ୍ୟାଗ୍ରହ କରୁଥିଲେ ।

ସୁଭାଷ ବୋଷଙ୍କର ଇଚ୍ଛା ଥିଲା, ବ୍ରିଟିଶ୍ ସରକାରଙ୍କୁ ଛଅ ମାସ ମଧ୍ୟରେ ଭାରତ ଶାସନ କ୍ଷମତା ହସ୍ତାନ୍ତର କରିବାକୁ ଏକ ଚରମପତ୍ର ପ୍ରଦାନ କରିବା, କିନ୍ତୁ ମହାତ୍ମା ଗାନ୍ଧି ଓ ଜବାହରଲାଲ ନେହେରୁ ଏ ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ । ବ୍ରିଟେନ୍‌ରେ ସୃଷ୍ଟି ହୋଇଥିବା ଗଣ୍ଡଗୋଳିଆ ପରିସ୍ଥିତିର ସୁଯୋଗ ଭାରତ ନେବା ଉଚିତ ଏବଂ ବ୍ରିଟିଶ ସରକାରଙ୍କୁ ସବୁ ଦିଗରୁ ବାସନ୍ଦ କରି ଆବଶ୍ୟକ ପଡ଼ିଲେ ଦେଶରେ ବିଦ୍ରୋହ କରିବାକୁ ସେ ଯୋଜନା କରିଥିଲେ । କିନ୍ତୁ ମହାତ୍ମା ଗାନ୍ଧି ଏହି ମନୋଭାବକୁ ଆଦୌ ପସନ୍ଦ କରିନଥିଲେ । ସେ ବ୍ରିଟିଶ ସରକାରଙ୍କ ଦୁର୍ଦ୍ଦିନର ସୁଯୋଗ ନେଇ ସ୍ୱାଧୀନତା ହାସଲ କରିବାକୁ ଚାହୁଁ ନଥିଲେ । ବ୍ରିଟିଶ ସରକାରଙ୍କ ହୃଦୟର ପରିବର୍ତ୍ତନ କରି ଭାରତର ସ୍ୱାଧୀନତା ଆଣିବାକୁ ସେ ଚେଷ୍ଟିତ ଥିଲେ । କଂଗ୍ରେସ ସେତେବେଳେ ସାତଟି ପ୍ରଦେଶରେ କ୍ଷମତାରେ ଥିଲା, ଯାହାକି ଆଗରୁ କୁହାଯାଇଛି, ସେ ପ୍ରଦେଶଗୁଡ଼ିକର ନେତୃବୃନ୍ଦ କ୍ଷମତାର ଭୋଗବିଳାସକୁ ତ୍ୟାଗକରି ସୁଭାଷଙ୍କ ବିପ୍ଳବ ପଥରେ ଆଗେଇବାକୁ ଇଚ୍ଛୁକ ନଥିଲେ । ସେତେବେଳର ପ୍ରଚଳିତ ପରମ୍ପରା ଅନୁସାରେ ପୂର୍ବ ସଭାପତିମାନଙ୍କ ଭଳି ସୁଭାଷ ଚନ୍ଦ୍ର ବୋଷ ତାଙ୍କର ମନୋନୀତ ସଦସ୍ୟମାନଙ୍କୁ ନେଇ କାର୍ଯ୍ୟକାରୀ କମିଟି ଗଠନ କରିବାପାଇଁ ପ୍ରସ୍ତୁତ ହେଉଥିଲାବେଳେ ଗୋବିନ୍ଦ ବଲ୍ଲଭ ପନ୍ଥ, ଯେ କି ଉତ୍ତର ପ୍ରଦେଶର ସେ ସମୟର ପ୍ରଧାନମନ୍ତ୍ରୀ ଥିଲେ, ଗାନ୍ଧିଜୀଙ୍କ ପରାମର୍ଶରେ ହିଁ ସଭାପତି ତାଙ୍କର କାର୍ଯ୍ୟକାରୀ କମିଟି ଗଢ଼ିପାରିବେ ବୋଲି ଏକ ପ୍ରସ୍ତାବ ଉପସ୍ଥାପିତ କରିଥିଲେ । ଏହାର ଅର୍ଥ ଗାନ୍ଧିଜୀଙ୍କ ବିନା ପରାମର୍ଶରେ ବା ଅନୁମୋଦନରେ କାର୍ଯ୍ୟକାରୀ କମିଟି ଗଠନ କରିବା କ୍ଷମତା ଆଉ ସୁଭାଷଙ୍କ ହାତରେ ରହିଲା ନାହିଁ । ପଟ୍ଟାଭି ସୀତାରାମାୟାଙ୍କର ପରାଜୟ ପରେ ସୁଭାଷଙ୍କ ସଙ୍ଗେ ଗାନ୍ଧିଜୀ ସବୁ କ୍ଷେତ୍ରରେ ଅସହଯୋଗ କରିବାରେ ଦୃଢ଼ପ୍ରତିଜ୍ଞ ଥିଲେ । ସେ ନିଜର ଅସହଯୋଗ ଅସ୍ତ୍ର ଇଂରେଜ ସରକାରଙ୍କ ଉପରେ ପ୍ରୟୋଗ ନକରି କଂଗ୍ରେସ ଅନୁଷ୍ଠାନର ଗଣତାନ୍ତ୍ରିକ ପଦ୍ଧତିରେ ନିର୍ବାଚିତ ସଭାପତି ସୁଭାଷ ବୋଷଙ୍କ ଉପରେ ପ୍ରୟୋଗ କରିଥିଲେ । ତ୍ରିପୁରୀ ଅଧିବେଶନରେ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କର କୁଖ୍ୟାତ ପ୍ରସ୍ତାବ କଂଗ୍ରେସ ଇତିହାସରେ ଏକ କଳଙ୍କିତ ଅଧ୍ୟାୟ ସୃଷ୍ଟି କଲା । ଏହା ଗାନ୍ଧିଜୀଙ୍କ ଏକଛତ୍ରବାଦ ମନୋବୃତ୍ତିକୁ ସୁସ୍ପଷ୍ଟ କଲା । ସଭାପତି ଯେ କେହି ହୁଅନ୍ତୁ, ଯଦି ଗାନ୍ଧିଜୀ ନିଜ ହାତରେ କାର୍ଯ୍ୟକାରୀ କମିଟିର ସଭ୍ୟମାନଙ୍କୁ ମନୋନୀତ କରିବାର କ୍ଷମତା ରଖିବେ, କଂଗ୍ରେସର ସଭାପତି ଗାନ୍ଧିଜୀଙ୍କ ହାତର କେବଳ ଏକ କ୍ରୀଡ଼ନକ ହୋଇ କାର୍ଯ୍ୟ କରିବା ଛଡ଼ା ଅନ୍ୟ ଉପାୟ ନ ଥିଲା । କଂଗ୍ରେସରେ ଏହି ଆଭ୍ୟନ୍ତରୀଣ ଚକ୍ରାନ୍ତ ସୁଭାଷଙ୍କୁ ହତୋତ୍ସାହ କରିଥିଲା । ଗାନ୍ଧିଜୀଙ୍କର ଏହି ଚକ୍ରାନ୍ତରେ କଂଗ୍ରେସର ସେତେବେଳର ସାମ୍ୟବାଦୀ ସଦସ୍ୟମାନେ ସୁଭାଷଙ୍କୁ ସମର୍ଥନ କରିବା ପରିବର୍ତ୍ତେ ନିରପେକ୍ଷତା ଅବଲମ୍ବନ କରି ପନ୍ଥ

ପ୍ରସ୍ତାବ ଗୃହୀତ କରାଇ ନେବାରେ ସହାୟକ ହୋଇଥିଲେ । ଗୋବିନ୍ଦ ବଲ୍ଲଭ ପନ୍ଥଙ୍କ ପ୍ରସ୍ତାବ ଗୃହୀତ ହୋଇଯିବା ପରେ ତ୍ରିପୁରୀ କଂଗ୍ରେସର ଏହି ଦୁଃଖଦ ଘଟଣା ଉପରେ ସୁଭାଷ ବୋଷ କହିଥିଲେ, "ତ୍ରିପୁରୀରେ ମୋର ଯେଉଁ ପରାଜୟ ଘଟିଲା ତାହା ମହାଭାରତ ଯୁଦ୍ଧରେ ଅଭିମନ୍ୟୁର ପରାଜୟ ।

ଗୋଟେ ପଟେ (୧) କଂଗ୍ରେସର ବାରଜଣ ବଛାବଛା ତୁଙ୍ଗ ପ୍ରବୀଣ ନେତା, (୨) ଜବାହରଲାଲଙ୍କ ପରି ବାମପନ୍ଥୀ ବନ୍ଧୁ, (୩) ସାତ ଜଣ ପ୍ରାଦେଶିକ ମୁଖ୍ୟମନ୍ତ୍ରୀ, (୪) ମହାତ୍ମାଗାନ୍ଧିଙ୍କ ନାମ, ପ୍ରତିପତ୍ତି ପ୍ରଭୃତି ଥିବାବେଳେ ଅନ୍ୟ ପଟେ କେବଳ ରୋଗାକ୍ରାନ୍ତ, ବାକ୍‌ଶକ୍ତିରହିତ ଶଯ୍ୟାଶାୟୀ ହୋଇ ମୁଁ (ସୁଭାଷ) ରହିଥିଲି ।

ନେହେରୁଙ୍କ ଭୂମିକା ସମ୍ବନ୍ଧରେ ସୁଭାଷ କହିଥିଲେ, ଏହି ସଙ୍କଟ ସମୟରେ ବ୍ୟକ୍ତିଗତ ଭାବେ ମୋର ଓ ଆଦର୍ଶଗତ ଭାବେ ଆମର ନେହେରୁ ଯେତେ କ୍ଷତି ଘଟାଇଥିଲେ ତାହା ଆଉ କେହି କରିପାରିବେ ନାହିଁ ।

କଂଗ୍ରେସର ବାରଜଣ ତୁଙ୍ଗ ନେତା ଯାହା କରିଛନ୍ତି, ନେହେରୁ ପ୍ରକାଶ୍ୟରେ ମୋ ବିରୁଦ୍ଧରେ ପ୍ରଚାର କରି ତା'ଠାରୁ ବହୁତ ବେଶୀ କ୍ଷତି କରିଛନ୍ତି ।"

ଗାନ୍ଧିଙ୍କ ସପକ୍ଷବାଦୀ ନେତାମାନେ ସୁଭାଷଙ୍କ କାର୍ଯ୍ୟକଳାପକୁ ସର୍ବଦା ବିରୋଧ କରୁଥିବାରୁ ଏ ଘଟଣାଗୁଡ଼ିକରେ ସୁଭାଷ ବାରମ୍ବାର ଗାନ୍ଧିଜୀଙ୍କ ନିକଟକୁ ଚିଠି ଲେଖିଥିଲେ । ରୋଗଶଯ୍ୟାରୁ ମୋଟ ଅଣଚାଶଟି ଚିଠି ଲେଖିଥିଲେ ସୁଭାଷ, ଆଉ ମଧ୍ୟ ତାରବାର୍ତ୍ତାରେ ଅନୁରୋଧ କରି ଖବର ପଠାଇଥିଲେ ଗାନ୍ଧିଜୀଙ୍କୁ—"ମୁଁ ଅସୁସ୍ଥ । ଦୟାକରି ଥରେ ମାତ୍ର ଏଠାକୁ ଆସନ୍ତୁ । ଅସୁସ୍ଥତାପାଇଁ ମୁଁ ନିଜେ ଯାଇପାରୁ ନାହିଁ । ଆଉ ନୂଆ ୱାର୍କିଂ କମିଟି ଯଦି ଏକମତାବଲମ୍ବୀ ନ ହୋଇ ସମାନୁପାତିକ ଭିତ୍ତିରେ ଗଠିତ ହୁଏ ସେଥିରେ ଆପଣଙ୍କ ସମ୍ମତି ଅଛି କି ନା ଜଣାଇବେ ।" ଗାନ୍ଧିଜୀ ଆସିଲେ ନାହିଁ । ଚିଠିଦ୍ୱାରା ଜଣାଇଲେ ଯେ "ମୋର ବକ୍ତବ୍ୟ ମୁଁ ପୂର୍ବରୁ କହିଛି । ସମ୍ଭବ ହେଲେ ତୁମ ଇଚ୍ଛାନୁସାରେ ସଦସ୍ୟମାନଙ୍କୁ ନେଇ ୱାର୍କିଂ କମିଟି ଗଠନ କର ।"

୧୯୩୯ ମସିହା ଏପ୍ରିଲ ମାସ ୧୦ ତାରିଖରେ ସୁଭାଷଙ୍କ ନିକଟକୁ ଗାନ୍ଧିଜୀ ଗୋଟିଏ ପତ୍ର ଲେଖି ଜଣାଇଥିଲେ ଯେ, ତାଙ୍କର ରାଜନୈତିକ ଚିନ୍ତାଧାରା ସୁଭାଷଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଗାନ୍ଧିଜୀ ସୁଭାଷଙ୍କର କୌଣସି ଯୁକ୍ତି ପ୍ରତି ସାମାନ୍ୟତମ ସହମତି ପ୍ରକାଶ ନ କରି ନିଜ ମତରେ ସର୍ବଦା ଅଟଳ ରହୁଥିଲେ । ୧୯୩୯ ମସିହା ଏପ୍ରିଲ ମାସ ଶେଷ ସପ୍ତାହରେ କଲିକତା ସହରର ୱେଲିଙ୍ଗଟନ୍‌ଠାରେ କଂଗ୍ରେସ କମିଟିର ବୈଠକରେ ମିଳାମିଶାର ସମସ୍ତ ଉଦ୍ୟମ ଓ ଆଲୋଚନା ବ୍ୟର୍ଥ ହେବା ଫଳରେ ସୁଭାଷ ଚନ୍ଦ୍ର ବୋଷ ଏପ୍ରିଲ ୨୮

ତାରିଖ ଦିନ ସଭାପତି ପଦରୁ ଇସ୍ତଫା ପ୍ରଦାନ କଲେ । ଡକ୍ଟର ରାଜେନ୍ଦ୍ର ପ୍ରସାଦ ଅସ୍ଥାୟୀ ଭାବରେ କଂଗ୍ରେସ ସଭାପତି ଆସନ ଅଳଂକୃତ କଲେ । ଗାନ୍ଧିଜୀଙ୍କ ଅସହଯୋଗଯୋଗୁଁ ଏପରି ଏକ କଳଂକିତ ଅଧ୍ୟାୟ ସୃଷ୍ଟି ହୋଇଥିଲା । ଗାନ୍ଧିଜୀ ସେହି ସମୟରେ କଲିକତାରେ ଉପସ୍ଥିତ ଥିଲେ ମଧ୍ୟ କଂଗ୍ରେସ କମିଟିର ବୈଠକରେ ଯୋଗ ଦେଇ ନ ଥିଲେ । ସେ ଖଦୀ ପ୍ରତିଷ୍ଠାନର ସତୀଶ ଚନ୍ଦ୍ର ଦାସଗୁପ୍ତାଙ୍କ ପାଖରେ ଅବସ୍ଥାନ କରୁଥିଲେ । ଗାନ୍ଧିଜୀଙ୍କୁ ସାକ୍ଷାତ କରି ସୁଭାଷ ବୁଝାମଣାପାଇଁ ସାଧ୍ୟମତେ ଚେଷ୍ଟା କରି ବିଫଳ ହୋଇଥିଲେ । ସୁଭାଷଙ୍କ ପ୍ରତି ଗାନ୍ଧିଜୀଙ୍କ ଏ ଅବିଚାର ସତ୍ତ୍ୱେ ସୁଭାଷଙ୍କର ଧୈର୍ଯ୍ୟ, ସୌଜନ୍ୟବୋଧ ଚିନ୍ତାଶୀଳ ବ୍ୟକ୍ତିମାନଙ୍କୁ ଅଭିଭୂତ କରିଥିଲା । ସୁଭାଷଙ୍କ ସଭାପତି ପଦ ତ୍ୟାଗ ଅବସରରେ ରବୀନ୍ଦ୍ରନାଥ ଠାକୁର ସୁଭାଷଙ୍କୁ ଲେଖିଥିଲେ, "ଭୟାନକ ଉତ୍ତେଜନା ମଧ୍ୟରେ ତୁମେ ଯେଉଁ ଧୈର୍ଯ୍ୟ ଓ ମର୍ଯ୍ୟାଦାବୋଧର ପରିଚୟ ପ୍ରଦାନ କରିଛ, ତାହାର ତୁଳନା ନାହିଁ । ତୁମର ନେତୃତ୍ୱ ଶକ୍ତିକୁ ଅଭିନନ୍ଦନ ଜଣାଉଛି ।"

## ଫରୱାର୍ଡ଼ ବ୍ଲକ୍ ଗଠନ

ସୁଭାଷ ବୋଷ ୧୯୩୯ ମସିହା ଜୁନ୍ ୨୨ ତାରିଖ ଦିନ 'ଫରୱାର୍ଡ଼ ବ୍ଲକ୍' ନାମକ ଏକ ରାଜନୈତିକ ସଂଗଠନ ଗଢ଼ିଥିଲେ । କଂଗ୍ରେସ ଭିତରେ ଥିବା ଅଧିକାଂଶ ବାମପନ୍ଥୀ ଚିନ୍ତାଧାରାର ଲୋକଙ୍କୁ ଏକାଠି କରି କଂଗ୍ରେସର ଏକ ଶାଖା ଭାବରେ 'ଫରୱାର୍ଡ଼ ବ୍ଲକ୍' ଗଢ଼ାହେଲା । ଏହାର ମୁଖପତ୍ର ଭାବରେ 'ଫରୱାର୍ଡ଼' ନାମକ ଏକ ସାପ୍ତାହିକୀ ପ୍ରକାଶ କରିବାକୁ ପଦକ୍ଷେପ ନେଇଥିଲେ । ଏଠାରେ ଉଲ୍ଲେଖ କରିବା ସମୀଚୀନ ହେବ ଯେ, ୧୯୨୨ ମସିହାରେ ଦେଶବନ୍ଧୁ ଚିତ୍ତରଂଜନ ଦାସ କଂଗ୍ରେସ ଭିତରେ 'ସ୍ୱରାଜ୍ୟ ଦଳ' ଗଠନ କରିଥିଲେ ଏବଂ ସେହି ଦଳର ମୋତିଲାଲ ନେହେରୁ ସଭାପତି ଓ ଦୃଢ଼ ସମର୍ଥକ ଥିଲେ । ସୁଭାଷ ବୋଷ ଆଶା କରିଥିଲେ ଯେ ଜବାହରଲାଲ ନେହେରୁ ଫରୱାର୍ଡ଼ ବ୍ଲକ୍‌ରେ ଯୋଗଦାନ କରିବେ । କିନ୍ତୁ ନେହେରୁ ଗାନ୍ଧିଜୀଙ୍କର ଅତ୍ୟନ୍ତ ଅନୁଗତ ଥିବାରୁ ସୁଭାଷ ବୋଷଙ୍କୁ ତୀବ୍ର ସମାଲୋଚନା କଲେ । ଅତ୍ୟନ୍ତ ପରିତାପର ବିଷୟ ଦେଶର ବାମପନ୍ଥୀ ଦଳମାନେ ମଧ୍ୟ ସୁଭାଷଙ୍କୁ ସମର୍ଥନ ଜଣାଇ ନଥିଲେ । ସୁଭାଷ ବୋଷ କିନ୍ତୁ ସମସ୍ତ ବିରୋଧ ସତ୍ତ୍ୱେ ସାମାନ୍ୟତମ ବିଚଳିତ ନ ହୋଇ କହିଥିଲେ, "ମୁଁ କାହାର ପ୍ରତିଛବି ନୁହେଁ, ପ୍ରତିଧ୍ୱନି ମଧ୍ୟ ନୁହେଁ- କାହାର Prototype ନୁହେଁ- I am myself."

୧୯୩୯ ଜୁନ୍ ଶେଷ ସପ୍ତାହରେ ଫରୱାର୍ଡ଼ ବ୍ଲକ୍‌ର ସର୍ବଭାରତୀୟ ସମ୍ମିଳନୀ ବମ୍ବେରେ ଅନୁଷ୍ଠିତ ହୋଇଥିଲା ଏବଂ ସୁଭାଷ ବୋଷ ସେଠାରେ କହିଥିଲେ, "ଆଜି

ଆମ୍ଭେମାନେ ଇତିହାସର ଏକ ଘୋର ସଙ୍କଟମୟ ସମୟରେ ଏକତ୍ରିତ ହୋଇଛେ । ଯେଉଁ ବିପଦ ଆମ୍ଭମାନଙ୍କର ଅନ୍ତର୍ବିନ୍ୟାସକୁ ପ୍ରତି ମୁହୂର୍ତ୍ତରେ ଛିନ୍ନଭିନ୍ନ କରୁଛି, ଆମେ ତା'ର ମୁକାବିଲାପାଇଁ ଏଠାରେ ପନ୍ଥା ନିର୍ଣ୍ଣୟ କରିବା । ଦେଶର ସେବା କରିବାପାଇଁ ଆମେ ଯେଉଁ ନୀତି ନିର୍ଦ୍ଧାରଣ କରିଛେ, ତାହା କେତେ ଦୂର ଫଳପ୍ରସୂ, ଚିନ୍ତା କରିବାର କଥା । ଆମେ ପରିବର୍ତ୍ତିତ ଧାରାରେ ନିଷ୍ଠାର ସହ କାର୍ଯ୍ୟ କରିପାରିନାହୁଁ । ମହାତ୍ମା ଗାନ୍ଧି ଓ ଦକ୍ଷିଣପନ୍ଥୀ ବନ୍ଧୁମାନେ ଆମ ସହିତ ନୀତି ଦୃଷ୍ଟିରୁ ସହମତ ନୁହନ୍ତି । ବର୍ତ୍ତମାନ ସମୟରେ ଏକ ଜାତୀୟ ଆନ୍ଦୋଳନ ଆରମ୍ଭ କରିବାକୁ ସେମାନେ ଚାହାନ୍ତି ନାହିଁ । ଏଥିପାଇଁ ପ୍ରକୃଷ୍ଟ ସମୟ ଆସିନାହିଁ ବୋଲି ସେମାନଙ୍କର ଧାରଣା । ଫରଓ୍ୱାର୍ଡ଼ ବ୍ଲକ୍ ତା'ର ଲକ୍ଷ୍ୟପଥରେ ଆଗେଇ ଯାଇ ନ ପାରିଲେ ବିପ୍ଳବାତ୍ମକ ବାମପନ୍ଥୀ କାର୍ଯ୍ୟଧାରା ବାଧାପ୍ରାପ୍ତ ହେବ । କଂଗ୍ରେସ ଅନୁଷ୍ଠାନ ମଧ୍ୟରେ ଥିବା ବହୁ ନେତା ବୈପ୍ଳବିକ କାର୍ଯ୍ୟକ୍ରମକୁ ଆଗେଇ ନେବାପାଇଁ ସମର୍ଥ ନୁହନ୍ତି । ଆମେ ଯେଉଁମାନେ ଏହାକୁ ଧ୍ୟେୟ ରୂପେ ଗ୍ରହଣ କରିଛେ, ସେମାନେ ଲକ୍ଷ୍ୟପଥରେ ଆଗେଇଯିବା ଉଚିତ ।

"ଏଥି ଭିତରେ ଆମେ ଯେଉଁ ସଫଳତା ହାସଲ କରିଛୁ, ତାହା ବିଚାରକୁ ନେଲେ ହତାଶ ହେବାର କିଛି ନାହିଁ । ଆମରି ବିରୋଧ ଫଳରେ କଂଗ୍ରେସ ମନ୍ତ୍ରୀମାନେ ଇଂରେଜ ଶାସନକଳରୁ ଓହରି ଆସିଛନ୍ତି । ଇଂରେଜମାନେ ଭାରତୀୟମାନଙ୍କଠାରୁ ଯୁଦ୍ଧପାଇଁ ନିଃସର୍ତ୍ତ ସାହାଯ୍ୟ ଚାହିଁଥିଲେ । ଆମର ବିରୋଧ ଫଳରେ କଂଗ୍ରେସ ମଧ୍ୟ ତା'ର ବିରୋଧ କରିଛି ।

"ଏବେ ଲକ୍ଷ୍ୟ କରାଯାଇଛି ଯେ ଦକ୍ଷିଣପନ୍ଥୀ ବନ୍ଧୁମାନେ ଆମ ସହିତ ସ୍ୱର ମିଶାଇ ସଂଘର୍ଷ ତଥା ସଂଗ୍ରାମର ସ୍ୱର ଉତ୍ତୋଳନ କରୁଛନ୍ତି । ବିନା ସଂଗ୍ରାମରେ ଭାରତର ମୁକ୍ତି ସହଜ ନୁହେଁ ବୋଲି ସେମାନଙ୍କର ମଧ୍ୟ ହୃଦ୍‌ବୋଧ ହେଲାଣି । ବୋଧହୁଏ ଏ ପ୍ରକାର ମନୋଭାବ, ଆମେ ତାଙ୍କ ମଧ୍ୟରେ ସୃଷ୍ଟି କରିବା ଦିଗରେ ସଫଳ ହୋଇଛେ ।

"ଆମ ସଂଗ୍ରାମରେ ଆମେ କେତେଦୂର ସଫଳତା ହାସଲ କରିବା, ତା'ର ଉତ୍ତର ସମୟ ଦେବ । ବିଫଳତା ଅନେକ ସମୟରେ ସଫଳତାର ସୋପାନ । ବିଫଳତାକୁ ଭୟକରି ସଂଗ୍ରାମରୁ ଓହରିଯିବାର ପ୍ରଶ୍ନ ନାହିଁ । ବର୍ତ୍ତମାନର ପ୍ରତ୍ୟେକ ମୁହୂର୍ତ୍ତକୁ ଆମେ ଯଥାର୍ଥ ବିନିଯୋଗ କରିବା ଉଚିତ । ଅବହେଳା କଲେ ଇତିହାସ ଆମକୁ କ୍ଷମା ଦେବ ନାହିଁ । ସାରା ବିଶ୍ୱ ଆମର କାର୍ଯ୍ୟକଳାପକୁ ଉଦ୍‌ଗ୍ରୀବ ହୋଇ ଚାହିଁଛି । ଚେଷ୍ଟା ନ କରିବା ଅପେକ୍ଷା, ଚେଷ୍ଟାକରି ବିଫଳ ହେବା ବରଂ ଶ୍ରେୟସ୍କର । ଆତ୍ମବିଶ୍ୱାସ ଆମ ଜୀବନର ଲକ୍ଷ୍ୟ । ମୁଁ ଅବଶ୍ୟ ରକ୍ତାକ୍ତ ସଂଘର୍ଷକୁ ପସନ୍ଦ କରେନାହିଁ; କିନ୍ତୁ ଆବଶ୍ୟକ ହେଲେ ତା'ପାଇଁ ପ୍ରସ୍ତୁତ ହେବାକୁ ହେବ ।

"ଫରୱାର୍ଡ଼ ବ୍ଲକ୍ ଐତିହାସିକ ଆବଶ୍ୟକତାକୁ ନେଇ ଜନ୍ମଲାଭ କରିଛି । କୌଣସି ଏକ ବ୍ୟକ୍ତି କିମ୍ବା ଦଳର ମରଜିକୁ ନେଇ ଏହାର ସୃଷ୍ଟି ନୁହେଁ । ଯେ ପର୍ଯ୍ୟନ୍ତ ଏହା ଐତିହାସିକ ଲକ୍ଷ୍ୟ ପୂରଣ ଦିଗରେ ସମର୍ଥ ହେବ, ସେ ପର୍ଯ୍ୟନ୍ତ ଏହା ବହୁ ବାଧାବନ୍ଧନ ମଧ୍ୟରେ ନିଶ୍ଚିତ ଭାବରେ ବଞ୍ଚିବ ।"

"ସ୍ୱାଧୀନତା ଇତିହାସର ସଂଗ୍ରାମୋତ୍ତର ପରିସ୍ଥିତିରେ ମଧ୍ୟ ଫରୱାର୍ଡ଼ ବ୍ଲକ୍‌ର କିଛି ଭୂମିକା ରହିଛି । ସ୍ୱାଧୀନତା ଲାଭ ପରେ ଏହାକୁ ରକ୍ଷା କରିବାର ଦାୟିତ୍ୱ ଆମ୍ଭମାନଙ୍କର । ଏକ ନୂତନ ସମୃଦ୍ଧ ଭାରତ ଗଠନ ଦିଗରେ ଆମ୍ଭମାନଙ୍କର ଅବଦାନ ଅପରିହାର୍ଯ୍ୟ । ଯେଉଁମାନଙ୍କ ଚେଷ୍ଟାରେ ସ୍ୱାଧୀନତା ମିଳିବ ସେହିମାନଙ୍କୁ ସ୍ୱାଧୀନୋତ୍ତର ପୁନର୍ଗଠନର ଦାୟିତ୍ୱ ବହନ କରିବାକୁ ପଡ଼ିବ । ଜୟ ହିନ୍ଦ୍ ।"

ଦୁଇବର୍ଷ କାଳ ୭ଟି ପ୍ରଦେଶରେ କଂଗ୍ରେସ ଦଳ କ୍ଷମତାସୀନ ହୋଇଥିଲେ ମଧ୍ୟ ସାଧାରଣ ଲୋକଙ୍କୁ ସନ୍ତୁଷ୍ଟ କରିପାରି ନଥିଲା । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ଭଳି ଏକଛତ୍ରବାଦୀ ମନୋବୃତ୍ତିର ନେତାଙ୍କ ନିର୍ଦ୍ଦେଶରେ ପରିଚାଳିତ ହୋଇ ସବୁବେଳେ ପାର୍ଲିଆମେଣ୍ଟାରୀ ବୋର୍ଡର ନିର୍ଦ୍ଦେଶକୁ ଅପେକ୍ଷା କରୁଥିଲା । ମିଲ୍‌ମାଲିକ, ଶିଳ୍ପପତି, ବ୍ୟବସାୟୀ ସଂପ୍ରଦାୟର ଲୋକମାନଙ୍କଠାରୁ ଚାନ୍ଦା ସଂଗ୍ରହ କରି ସେମାନଙ୍କର ବହୁ ଲୋକବିରୋଧୀ କାର୍ଯ୍ୟକୁ ମନ୍ତ୍ରୀମାନେ ସୁବିଧା ପ୍ରଦାନ କରି କଂଗ୍ରେସକୁ ଅପ୍ରିୟ କରିଦେଲେ । ସବୁଆଡ଼େ ଶ୍ରମିକ ଶ୍ରେଣୀ, ଛାତ୍ର ସମାଜ ଅନନ୍ୟୋପାୟ ହୋଇ ସରକାରଙ୍କ ବିରୁଦ୍ଧରେ ଧର୍ମଘଟ ଓ ଆନ୍ଦୋଳନ କଲେ । କଂଗ୍ରେସର ମନ୍ତ୍ରୀମାନେ ଧର୍ମଘଟ ଓ ଆନ୍ଦୋଳନକୁ ଦମନ କରିବାକୁ ପୋଲିସର ସହାୟତାରେ ଲାଠି, ଲୁହବୁହା ଗ୍ୟାସ୍ ପ୍ରୟୋଗ କରିବାକୁ ପଛାଇ ନଥିଲେ । ଜନସାଧାରଣଙ୍କ ବିରୋଧକୁ ସାମନା କରିବାକୁ କଂଗ୍ରେସ କାର୍ଯ୍ୟକାରୀ କମିଟି ଦୁଇଟି ପ୍ରସ୍ତାବ ଧାର୍ଯ୍ୟ କଲେ । ସେଗୁଡ଼ିକ ହେଲା- (୧) ବିନା ଅନୁମତିରେ କେହି ସତ୍ୟାଗ୍ରହ ଆରମ୍ଭ କରି ପାରିବେନାହିଁ । (୨) ପ୍ରାଦେଶିକ କଂଗ୍ରେସ କମିଟିମାନେ ପ୍ରାଦେଶିକ ମନ୍ତ୍ରିମଣ୍ଡଳମାନଙ୍କୁ କୌଣସି ନିର୍ଦ୍ଦେଶ ମଧ୍ୟ ଦେଇପାରିବେ ନାହିଁ, କେବଳ କଂଗ୍ରେସର କେନ୍ଦ୍ର ପାର୍ଲିଆମେଣ୍ଟାରୀ କମିଟିର ନିର୍ଦ୍ଦେଶ ଓ ଉପଦେଶରେ ମନ୍ତ୍ରିମଣ୍ଡଳମାନେ କାର୍ଯ୍ୟ କରିବେ ।

ଏ ଦୁଇଟିଯାକ ପ୍ରସ୍ତାବ ଦେଶର ସ୍ୱାର୍ଥ ଦୃଷ୍ଟିରୁ କ୍ଷତିକାରକ ବୋଲି ସୁଭାଷଙ୍କର ହୃଦ୍‌ବୋଧ ହେବାରୁ ସେ ମର୍ମାହତ ହୋଇ ଇଂରେଜ ସରକାରଙ୍କ ବିରୁଦ୍ଧରେ ଆନ୍ଦୋଳନ କରିବାପାଇଁ ଯୁବସମାଜକୁ ଆହ୍ୱାନ ଜଣାଇଲେ । ଏହି ଆନ୍ଦୋଳନ ଡାକରା କଂଗ୍ରେସ ୱାର୍କିଂ କମିଟିର ନିର୍ଦ୍ଦେଶର ଅବମାନନା ରୂପେ ବିବେଚିତ ହେଲା । ସେହି ସମୟରେ ସୁଭାଷ ବଂଗଳା ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥିଲେ ।

## କଂଗ୍ରେସରୁ ବହିଷ୍କାର

୧୯୩୯ ମସିହା ଅଗଷ୍ଟ ୧୧ ତାରିଖ ଦିନ କଂଗ୍ରେସର ଦକ୍ଷିଣପନ୍ଥୀ ନେତାମାନେ ବମ୍ବେଠାରେ କାର୍ଯ୍ୟକାରୀ କମିଟିର ବୈଠକ ଡକାଇ ପ୍ରସ୍ତାବ ଗ୍ରହଣ କଲେ ଯେ ସୁଭାଷ ବଂଗଳା ପ୍ରାଦେଶିକ କମିଟିର ସଭାପତି ରହିପାରିବେ ନାହିଁ କିମ୍ୱା କଂଗ୍ରେସର କୌଣସି ପଦପଦବୀରେ ରହିପାରିବେ ନାହିଁ । ତାଙ୍କୁ ତିନି ବର୍ଷପାଇଁ ଦଳରୁ ବହିଷ୍କାର କରାଯାଇଥିଲା । କିନ୍ତୁ ବଂଗଳା ପ୍ରଦେଶ କଂଗ୍ରେସ କମିଟି କଂଗ୍ରେସ କାର୍ଯ୍ୟକାରିଣୀ କମିଟିର ଏହି ପ୍ରସ୍ତାବକୁ ଗ୍ରହଣ କରି ନଥିଲା । ତେଣୁ ବଂଗଳା ପ୍ରଦେଶ କଂଗ୍ରେସ କମିଟିକୁ ମଧ୍ୟ ଭାଙ୍ଗି ଦିଆଯାଇଥିଲା । ସୁଭାଷଙ୍କ କଂଗ୍ରେସରୁ ବହିଷ୍କାର ଆଦେଶକୁ ପ୍ରତିବାଦ କରି ରବୀନ୍ଦ୍ରନାଥ ଗାନ୍ଧିଜୀଙ୍କୁ ଏଥିରେ ହସ୍ତକ୍ଷେପ କରିବାକୁ ଅନୁରୋଧ କରିଥିଲେ । କିନ୍ତୁ ଗାନ୍ଧିଜୀ କବିଗୁରୁଙ୍କୁ ଲେଖିଥିଲେ ଯେ ସେ ସୁଭାଷଙ୍କୁ କଂଗ୍ରେସର ଶୃଙ୍ଖଳା ମାନି ଚଳିବାକୁ ନିର୍ଦ୍ଦେଶ ଦିଅନ୍ତୁ । ଯଦି କଂଗ୍ରେସର ଶାସନକୁ ସୁଭାଷ ବାବୁ ମାନି ନିଅନ୍ତି ତେବେ ତାଙ୍କ ଉପରୁ ନିଷେଧାଜ୍ଞା ପ୍ରତ୍ୟାହୃତ ହେବ । ଗାନ୍ଧିଜୀ ଏ ସଂପର୍କରେ ଦୀନବନ୍ଧୁ ଏଣ୍ଡ୍ରୁଜଙ୍କ ନିକଟକୁ ଏକ ପତ୍ରରେ ଲେଖିଥିଲେ, "I feel Subhas is behaving like a spoilt child of the family."

ସୁଭାଷ ଚନ୍ଦ୍ର ବୋଷ କଂଗ୍ରେସରୁ ବହିଷ୍କାର ସମ୍ପର୍କୀୟ ସମସ୍ତ ଘଟଣା ଉପରେ ତାଙ୍କ ମତାମତ ଦେଇ କହିଥିଲେ, "କଂଗ୍ରେସ ମଧ୍ୟରେ ଜଘନ୍ୟ ଏକନାୟକତ୍ୱ ଚାଲିଛି । ହିଟଲରୀ ବ୍ୟବସ୍ଥାଠାରୁ ତା'ର କୌଣସି ତଫାତ୍ ନାହିଁ ।" ଏହି ସମୟରେ ସୁଭାଷଙ୍କୁ ତାଙ୍କ ବିଶୃଙ୍ଖଳାପାଇଁ କାର୍ଯ୍ୟକାରୀ ସଭାପତି ରାଜେନ୍ଦ୍ର ପ୍ରସାଦ କୈଫିୟତ୍ ମଗାଇ ପଠାଇଲେ । ସୁଭାଷ ତା'ର ଉତ୍ତରରେ ଲେଖିଥିଲେ ଯେ, କୌଣସି ନିଷ୍ପତ୍ତି ବିରୁଦ୍ଧରେ ବ୍ୟକ୍ତିଗତ ମତପ୍ରଦାନ କରିବୋଲାଗି ସମସ୍ତଙ୍କର ଅଧିକାର ରହିଛି । ଶୃଙ୍ଖଳା ଶବ୍ଦକୁ ରାଜେନ୍ଦ୍ର ପ୍ରସାଦ ଯେପରି ବ୍ୟାଖ୍ୟା କରିଥିଲେ ତାହାକୁ ସେ ମାନିନେଇ ପାରୁ ନାହାନ୍ତି ବୋଲି ଉଲ୍ଲେଖ କରିଥିଲେ ଏବଂ ନିଜକୁ ଜଣେ କଠୋର ନିୟମାନୁବର୍ତ୍ତୀ ଓ ଶୃଙ୍ଖଳାପରାୟଣ ବ୍ୟକ୍ତି ବୋଲି ଦୃଢ଼ୋକ୍ତି ପ୍ରକାଶ କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଉଭୟ ମହାତ୍ମା ଗାନ୍ଧି ଓ ରାଜେନ୍ଦ୍ର ପ୍ରସାଦ ବିଭିନ୍ନ ସମୟରେ ଖୋଲାଖୋଲି ଭାବରେ କହିଥିଲେ ଯେ ସଭାପତି ପଦ ପରିତ୍ୟାଗ କରିବା ପରେ ସୁଭାଷ ଚନ୍ଦ୍ର ବୋଷଙ୍କର ଜନପ୍ରିୟତା ବହୁ ପରିମାଣରେ ବୃଦ୍ଧି ପାଇଛି ।

## ସ୍ୱାଧୀନତା ଲାଭପାଇଁ ବ୍ୟଗ୍ରତା

୧୯୩୯ ମସିହା ସେପ୍ଟେମ୍ବର ମାସ ୩ ତାରିଖ ଦିନ ମାନ୍ଦ୍ରାଜ ସହରର ସମୁଦ୍ର ଉପକଣ୍ଠରେ ଦୁଇ ଲକ୍ଷରୁ ଊର୍ଦ୍ଧ୍ୱ ଜନସମାବେଶରେ ଭାଷଣ ଦେଉଥିଲା ବେଳେ ସୁଭାଷ ବୋଷ ଜାଣିବାକୁ ପାଇଲେ ଯେ ୟୁରୋପରେ ସେପ୍ଟେମ୍ବର ୧ ତାରିଖରୁ ଯୁଦ୍ଧ ଆରମ୍ଭ ହୋଇଯାଇଛି । ଇଂଲଣ୍ଡ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଛି । ସୁଭାଷ ଜନସମାବେଶକୁ ସମ୍ବୋଧିତ କରି କହିଲେ ଯେ ତ୍ରିପୁରୀ କଂଗ୍ରେସ ଅଧିବେଶନରେ ସେ କଂଗ୍ରେସକୁ ଅନୁରୋଧ କରିଥିଲେ ଯେ ବ୍ରିଟିଶ ସରକାରଙ୍କୁ ଚରମପତ୍ର ଦିଆଯାଉ ଯେ ସେ ୬ ମାସ ମଧ୍ୟରେ ଭାରତକୁ ସ୍ୱାଧୀନତା ପ୍ରଦାନ କରନ୍ତୁ, କିନ୍ତୁ ତାହା ଗ୍ରହଣ କରାଗଲା ନାହିଁ । ସେ କହିଥିଲେ ଯେ ବ୍ରିଟେନ୍‌ର ସଂକଟ ସମୟ ଭାରତପାଇଁ ମହା ସୁଯୋଗ ଆଣିଦେବ । ଯୁଦ୍ଧ ଘୋଷଣା ଖବର ଶୁଣି ଗାନ୍ଧିଜୀ ତାଙ୍କର ଅହିଂସ ନୀତିର ପରିଚୟ ଦେବାପାଇଁ ବଡ଼ଲାଟ୍‌ଙ୍କ ସଙ୍ଗେ ସାକ୍ଷାତ କରି କହିଥିଲେ ଯେ ବିଲାତର ରାଜପ୍ରାସାଦ ଉପରେ ବୋମା ପଡ଼ିବା କଥା ଭାବିଲେ ତାଙ୍କ ହୃଦୟ କମ୍ପିଉଠେ । ଗାନ୍ଧିଜୀଙ୍କ ଏହି ମତରେ ଉତ୍ସାହିତ ହୋଇ ଭାରତର ଗଭର୍ଣ୍ଣର ଜେନେରାଲ ଲର୍ଡ ଲିନ୍‌ଲିଥ୍‌ଗୋ କାହାର ପରାମର୍ଶ ନ ନେଇ ଭାରତ ବର୍ଷ ଯୁଦ୍ଧରେ ଯୋଗ ଦେଉଛି ବୋଲି ଘୋଷଣା କଲେ ଏବଂ ସେପ୍ଟେମ୍ବର ୬ ତାରିଖ ଦିନ ମହାତ୍ମା ଗାନ୍ଧି ବଡ଼ଲାଟ୍ ଲିନ୍‌ଲିଥ୍ ଗୋଙ୍କ ସହ ଆଲୋଚନା କଲା ପରେ ବିବୃତି ଦେଇଥିଲେ ଯେ ବ୍ରିଟେନ ଓ ଭାରତ ମଧ୍ୟରେ ମତପାର୍ଥକ୍ୟ ଥିଲେ ମଧ୍ୟ ବ୍ରିଟେନ୍‌କୁ ଯୁଦ୍ଧ ସମୟରେ ଭାରତ ସହଯୋଗ କରିବ । କଂଗ୍ରେସର ନେତୃମଣ୍ଡଳୀ ବିବୃତି ଦେଇଥିଲେ, "ଯଦିଓ ଆମ୍ଭେମାନେ ସ୍ୱାଧୀନତା ଚାହୁଁ, ତଥାପି ଆମ୍ଭମାନଙ୍କର କାମ୍ୟ ବ୍ରିଟେନର ବିଜୟ ।"

କଂଗ୍ରେସର ଏହି ମନ୍ତବ୍ୟକୁ ସୁଭାଷ ବୋଷ ଅତି କଟୁ ଭାଷାରେ ସମାଲୋଚନା କରି ଦେଶବାସୀଙ୍କୁ ମନେପକାଇ ଦେଇଥିଲେ ଯେ ୧୯୨୭ ମସିହାଠାରୁ କଂଗ୍ରେସ ଲଗାତାର ଘୋଷଣା କରିଆସୁଛି ଯେ ଇଂଲଣ୍ଡ ଯଦି କେବେ ଯୁଦ୍ଧରେ ଲିପ୍ତ ହୁଏ ତେବେ ଭାରତ ତାକୁ ଆଦୌ ସହଯୋଗ କରିବ ନାହିଁ, କାରଣ ଭାରତ ପ୍ରଥମ ବିଶ୍ୱଯୁଦ୍ଧରେ ଇଂଲଣ୍ଡକୁ ସାହାଯ୍ୟ କରି କୌଣସି ସୁବିଧା ସୁଯୋଗ ପାଇପାରି ନଥିଲା । ବରଂ ଅତି ନୃଶଂସ ଭାବରେ ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ଭାରତବାସୀଙ୍କୁ ସ୍ତମ୍ଭୀଭୂତ କରିଥିଲା । ରାଓଲଟ୍ ଆକ୍ଟର ପ୍ରଚଳନ କରି ଇଂରେଜ ସରକାର ଦେଶବାସୀଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚଳାଇ ଆସୁଥିଲେ । ଏହି ପୃଷ୍ଠଭୂମିରେ ଗାନ୍ଧିଜୀ, ଜବାହରଲାଲ ନେହେରୁ ଓ କଂଗ୍ରେସ ନେତୃବୃନ୍ଦ ବ୍ରିଟେନ୍‌କୁ ଯୁଦ୍ଧରେ ସହାୟତା ପ୍ରଦାନ କରିବା ଓ ତା'ର ବିଜୟ କାମନା କରିବା ଦେଶବାସୀଙ୍କ ପ୍ରତି ଚରମ ବିଶ୍ୱାସଘାତକତା ବୋଲି ସେ କହିଥିଲେ । ସେପ୍ଟେମ୍ବର ୮ ତାରିଖ ଦିନ

ଗାନ୍ଧିଜୀଙ୍କର ୱାର୍ଦ୍ଧା ବାସଭବନରେ କଂଗ୍ରେସ କାର୍ଯ୍ୟକାରିଣୀର ଏକ ଜରୁରୀ ବୈଠକ ଆହୂତ ହୋଇଥିଲା । ସୁଭାଷ ଚନ୍ଦ୍ର ବୋଷ କଂଗ୍ରେସରୁ ବିତାଡ଼ିତ ହୋଇଥିଲେ ମଧ୍ୟ ତାଙ୍କୁ ସ୍ୱତନ୍ତ୍ର ଭାବରେ ନିମନ୍ତ୍ରଣ କରାଯାଇ ଦ୍ୱିତୀୟ ବିଶ୍ୱଯୁଦ୍ଧ ସଂପର୍କରେ ତାଙ୍କର ମତାମତ ଗ୍ରହଣ କରାଯାଇଥିଲା । ସୁଭାଷ ବୋଷ ଦୃଢ଼ତାର ସହିତ କହିଥିଲେ ଯେ, "ଏ ସୁଯୋଗ ଆଉ ମିଳିବ ନାହିଁ । ଏ ସଂପର୍କରେ ଯଦି କଂଗ୍ରେସ କାର୍ଯ୍ୟକାରୀ ପରିଷଦ କୌଣସି ବ୍ୟବସ୍ଥା ଗ୍ରହଣ ନ କରେ ତେବେ ଦେଶର ସ୍ୱାର୍ଥରକ୍ଷାପାଇଁ ଯାହା ଭଲ ମନେ କରିବ ଫରୱାର୍ଡ଼ ବ୍ଲକ୍ ତାହା କରିବ ।" ସୁଭାଷ ଫରୱାର୍ଡ଼ ପତ୍ରିକାରେ ଯୁଦ୍ଧ ସମୟରେ ଭାରତର ଭୂମିକା ଆନ୍ଦୋଳନାତ୍ମକ ହେବା ଉଚିତ୍ ବୋଲି ଉଲ୍ଲେଖ କରିଥିଲେ । ତାଙ୍କ ମତାମତକୁ ଦେଶର ସବୁଆଡ଼େ ସମର୍ଥନ ମିଳୁଥିଲା । ଗୌହାଟୀଠାରେ ଅକ୍ଟୋବର ୧୯୩୯ ମସିହାରେ ଜନସାଧାରଣ ତାଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ନାଗପୁରଠାରେ ଏକ ଜନସମାବେଶରେ ସେ କହିଥିଲେ, "ଏ ଯୁଦ୍ଧରେ ଇଂରେଜଙ୍କୁ ଜୟଯୁକ୍ତ କରିବାପାଇଁ ସହଯୋଗ କରିବାର ଅର୍ଥ ସାମ୍ରାଜ୍ୟବାଦ ବିସ୍ତାରରେ ସାହାଯ୍ୟ କରିବା । ଇତି ପୂର୍ବରୁ ଇଂରେଜ ବହୁବାର ନିଜର ପ୍ରତିଶ୍ରୁତି ଭଙ୍ଗ କରିଥିବାରୁ ଯୁଦ୍ଧ ଜୟ ପରେ ତା'ର ସୁଦୃଢ଼ ଅବସ୍ଥାରେ ସେ ଭାରତକୁ କୌଣସି ପ୍ରକାର ସ୍ୱାଧୀନତା ଦେବନାହିଁ । ଯଦି ସେ ସ୍ୱାଧୀନତା ଦେବାପାଇଁ ପ୍ରତିଶ୍ରୁତି ଦେଉଛି ତେବେ ପ୍ରଥମେ ଭାରତକୁ ସ୍ୱାଧୀନ ଘୋଷଣା କରି ସାହାଯ୍ୟ କାମନା କରୁ । ବିଶ୍ୱରେ ଗଣତନ୍ତ୍ରର ସୁରକ୍ଷାପାଇଁ ସ୍ୱାଧୀନ ଭାରତ ଇଂରେଜମାନଙ୍କ ସହିତ କାନ୍ଧ ମିଳାଇ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେବ । ସେକଥା ନ କରି ଭାରତକୁ ସର୍ବଦା ପଦଦଳିତ କରିବାରେ ଯେଉଁ ହୀନ ପ୍ରଚେଷ୍ଟା ଇଂରେଜ ସରକାର ଅବ୍ୟାହତ ରଖିଛି, ସେଥିରେ ସହଯୋଗ କରିବାର ଅର୍ଥ ପରାଧୀନତାର ନାଗଫାଶକୁ ଶକ୍ତ କରିବା । ଆଉ ନୁହଁ । ଭାରତବର୍ଷର ଭାଗ୍ୟନିୟନ୍ତ୍ରଣର ଅଧିକାର ଭାରତବାସୀଙ୍କର । ତେଣୁ ସେ ଆହ୍ୱାନ ଜଣାଇଲେ, 'All power to the Indian people.' ଏଥିରେ ହିନ୍ଦୁ ମୁସଲମାନର ପ୍ରଶ୍ନ ନାହିଁ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଆମେ ଭାରତମାତାର ସନ୍ତାନ । ତାହାର ମୁକ୍ତି ସଭିଙ୍କର କାମ୍ୟ ।"

୧୯୩୯ ମସିହା ଏପ୍ରିଲ ମାସଠାରୁ ଅକ୍ଟୋବର ମାସ ପର୍ଯ୍ୟନ୍ତ କ୍ରମାନ୍ୱୟରେ ସୁଭାଷ ବୋଷ ପ୍ରଚାର କାର୍ଯ୍ୟ ଚଳାଇ ରଖି ଦେଶରେ ଜନମତ ଜାଗ୍ରତ କରିପାରିଥିଲେ । ପରିସ୍ଥିତିର ଗାମ୍ଭୀର୍ଯ୍ୟକୁ ହୃଦ୍‌ବୋଧ କରି ବଡ଼ଲାଟ୍ ଲିନ୍‌ଲିଥ୍ ଗୋ ମଧ୍ୟ ଦେଶର ବଛାବଛା ନେତା ଯଥା- ମହାତ୍ମା ଗାନ୍ଧି, ସୁଭାଷ ଚନ୍ଦ୍ର ବୋଷ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ରାଜେନ୍ଦ୍ର ପ୍ରସାଦ ଓ ଜବାହରଲାଲ ନେହେରୁଙ୍କୁ ନିମନ୍ତ୍ରଣ କରି ସେମାନଙ୍କ ସଙ୍ଗେ ଆଲୋଚନା କରିଥିଲେ । ଆଲୋଚନା ପରେ ବଡ଼ଲାଟ୍ ମନ୍ତବ୍ୟ ଦେଇଥିଲେ, "ଜଣେ ମାତ୍ର ଭାରତୀୟ ନେତାଙ୍କ

ସୁସ୍ପଷ୍ଟ ମତାମତ ମୁଁ ଲକ୍ଷ୍ୟ କଲି । ବୋଷ୍ କମ୍ କଥା କୁହନ୍ତି, କିନ୍ତୁ ଯାହା କୁହନ୍ତି ତାହା ଯଥାର୍ଥ । ଗାନ୍ଧି ଖୁବ୍ ବେଶୀ ଭାବପ୍ରବଣ । ଜବାହରଲାଲ ଖୁବ୍ ବେଶୀ କଥା କୁହନ୍ତି । ଅନ୍ୟମାନଙ୍କ କଥାରେ ସେପରି କିଛି ମୂଲ୍ୟ ନ ଥାଏ । ତେବେ Bose is concerted." କେବଳ ମାତ୍ର ଦାମ୍ଭିକତା ଓ ଅଳ୍ପ କଥା କହିବା ତ୍ରୁଟି ବ୍ୟତୀତ ସୁଭାଷଙ୍କର ଅନ୍ୟ କୌଣସି ଦୁର୍ବଳତା ବଡ଼ଲାଟ୍ ଦେଖିପାରି ନଥିଲେ ।

## ଓଡ଼ିଶାକୁ ପ୍ରତ୍ୟାବର୍ତ୍ତନ

ସୁଭାଷ ବୋଷ ବିଭିନ୍ନ ପ୍ରଦେଶରେ ଫରୱାର୍ଡ୍ ବ୍ଲକ୍‌ର ଶାଖାମାନ ଗଠନ କରିଥିଲେ । ବିଶେଷ ଭାବରେ ଯୁବଶକ୍ତିକୁ ଏକତ୍ର କରି ଦେଶର ସ୍ୱାଧୀନତା ଆନ୍ଦୋଳନରେ ସେମାନଙ୍କୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବାକୁ ପ୍ରସ୍ତୁତ କରୁଥିଲେ । ସୁଭାଷଙ୍କ ଆହ୍ୱାନରେ ଭାରତର ଯୁବସମାଜ ମଧ୍ୟରେ ଅଦ୍ଭୁତ ଜାଗରଣ ଦେଖାଦେଇଥିଲା । ଓଡ଼ିଶାରେ ଅନେକ ଛାତ୍ରନେତା ଫରୱାର୍ଡ଼ ବ୍ଲକ୍‌ରେ ଯୋଗ ଦେଲେ । ସେମାନେ ୧୯୩୯ ମସିହା ମଧ୍ୟଭାଗରେ କଟକରେ ଏକ ସମ୍ମିଳନୀର ଆୟୋଜନ କରିଥିଲେ ଏବଂ ସୁଭାଷ ବୋଷଙ୍କୁ ମୁଖ୍ୟ ଅତିଥି ଭାବରେ ଯୋଗଦେବାକୁ ନିମନ୍ତ୍ରଣ କରିଥିଲେ । ଯଦୁମଣି ମଂଗରାଜ ଏହି ଯୁବ ସମ୍ମିଳନୀ ଅଭ୍ୟର୍ଥନା ସମିତିର ସଭାପତି ହୋଇଥିଲେ । ସୁଭାଷ ବୋଷ ରେଳରେ ଆସି କଟକ ଷ୍ଟେସନରେ ପହଞ୍ଚିଲା ବେଳେ ହଜାର ହଜାର ଲୋକ ତାଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଣ୍ଡିତ ନୀଳକଣ୍ଠ ଦାସ ସୁଭାଷ ବୋଷଙ୍କୁ ସମ୍ବର୍ଦ୍ଧନା ଜଣାଇବାପାଇଁ ରେଳ ଷ୍ଟେସନରେ ଉପସ୍ଥିତ ଥିଲେ । ସୁଭାଷ ବୋଷ ଓ ନୀଳକଣ୍ଠ ଦାସ ଏକ ସୁସଜ୍ଜିତ ହାତୀ ଉପରେ ବସି କଟକ ସହର ପରିକ୍ରମା କରୁଥିଲା ବେଳେ ରାସ୍ତାର ଦୁଇ ପାର୍ଶ୍ୱରେ ହଜାର ହଜାର ଲୋକ 'ସୁଭାଷ ବୋଷ ଜିନ୍ଦାବାଦ୍', 'ଫରୱାର୍ଡ଼ ବ୍ଲକ୍ ଜିନ୍ଦାବାଦ୍' ଧ୍ୱନି ଦେଇ ତାଙ୍କ ପ୍ରତି ଅକପଟ ସ୍ନେହ ପ୍ରଦର୍ଶନ କରିଥିଲେ । ସନ୍ଧ୍ୟା ସମୟରେ କଟକ ମ୍ୟୁନିସିପାଲିଟି ପଡ଼ିଆରେ ଏକ ବିରାଟ ସାଧାରଣ ସଭାରେ ଭାଷଣ ଦେଇ ସୁଭାଷ କହିଥିଲେ, "ପୃଥିବୀରେ କୌଣସି ଶକ୍ତି ନାହିଁ ଯାହାକି ଭାରତକୁ ପରାଧୀନ କରି ରଖିପାରିବ । ବିଶ୍ୱଯୁଦ୍ଧ ଆସନ୍ନ । ସଂଗ୍ରାମର ଏହି ପ୍ରକୃଷ୍ଟ ସମୟରେ ଏକଜୁଟ ହୁଅ । ଦେଶବାସୀ ! ମୋତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି ।"

ସେହି ଯୁବ ସମ୍ମିଳନୀରେ ବହୁ ବ୍ୟକ୍ତି ସୁଭାଷଙ୍କ ସହିତ ହାତ ମିଳାଇବାପାଇଁ ଶପଥ ନେଇଥିଲେ । ପଣ୍ଡିତ ନୀଳକଣ୍ଠ ଦାସ ସୁଭାଷଙ୍କ ମତକୁ ଦୃଢ଼ ସମର୍ଥନ କରି ତାଙ୍କ ସାଙ୍ଗରେ ବ୍ରହ୍ମପୁର, ପୁରୀ, ବାଲେଶ୍ୱର ପ୍ରଭୃତି ସ୍ଥାନମାନ ଗସ୍ତ କରି ସବୁଠାରେ ସୁଭାଷଙ୍କ ସହିତ ଏକମତ ହୋଇ ସଭାମାନଙ୍କରେ ଅଗ୍ନିବର୍ଷୀ ଭାଷଣମାନ ପ୍ରଦାନ କରିଥିଲେ । ପୁରୀ ନିକଟବର୍ତ୍ତୀ

ଚନ୍ଦନପୁରରେ ଏକ ବିରାଟ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ଓଡ଼ିଆ ଭାଷାରେ ସୁଭାଷ ବୋଷ ଭାବବିହ୍ୱଳ ହୋଇ କଂଗ୍ରେସ ନେତାମାନଙ୍କୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ ତାହା ଦେଶର ସ୍ୱାଧୀନତା ଆଣିବାରେ କିଭଳି ବାଧା ସୃଷ୍ଟି କରିବ, ତାହା ଲୋକଙ୍କୁ ବୁଝାଇଥିଲେ । ଏଠାରେ ସେ କହିଥିଲେ ଯେ ଓଡ଼ିଶା ହେଉଛି ବୀରସନ୍ତାନମାନଙ୍କର ଜନ୍ମଭୂମି । ସେହି ଓଡ଼ିଶାର ସନ୍ତାନମାନଙ୍କ ଉପରେ ତାଙ୍କର ସମ୍ପୂର୍ଣ୍ଣ ଆସ୍ଥା ରହିଛି । ସେ ସଭାକାର୍ଯ୍ୟ ଶେଷ ପରେ ବହୁ ଲୋକଙ୍କ ଗହଣରେ ଶ୍ରୀଜଗନ୍ନାଥ ଦର୍ଶନପାଇଁ ଗଲେ ଓ ଜଗନ୍ନାଥଙ୍କର ଆଶୀର୍ବାଦ ଭିକ୍ଷା କଲେ । ସେହିଦିନ ସନ୍ଧ୍ୟାରେ ପୁରୀ ବଡ଼ଦାଣ୍ଡରେ ନୀଳକଣ୍ଠ ଦାସଙ୍କ ସଭାପତିତ୍ୱରେ ହୋଇଥିବା ସଭାରେ ସୁଭାଷ ବୋଷଙ୍କ ଅତି ସରଳ ଓ ମର୍ମସ୍ପର୍ଶୀ ଭାଷଣ ସମସ୍ତଙ୍କୁ ସ୍ତବ୍ଧ କରିଦେଇଥିଲା । ପରେ ସେ ପୁରୀଠାରୁ ବିଦାୟ ନେଇ ବ୍ରହ୍ମପୁର, ବାଲେଶ୍ୱର ପ୍ରଭୃତି ସ୍ଥାନମାନଙ୍କୁ ଯାଇ କଲିକତା ଫେରିଯାଇଥିଲେ ।

ସୁଭାଷ ବୋଷ ସବୁଆଡ଼େ ଓଡ଼ିଶାକୁ ତାଙ୍କ ଜନ୍ମଭୂମି ବୋଲି କହି ଗର୍ବ କରୁଥିଲେ । ଓଡ଼ିଶା ବାହାରେ ଓଡ଼ିଆଙ୍କ ସଙ୍ଗେ ଦେଖାହେଲେ ସେ ଓଡ଼ିଆରେ କଥାବାର୍ତ୍ତା ହୋଇ ତା'ର ଦୁଃଖସୁଖ ବୁଝୁଥିଲେ । କଟକରେ ତାଙ୍କ ଜନ୍ମ ସ୍ଥାନରେ ସେ ନିଜର ବିପ୍ଳବୀ ସଂଗଠନର ମୂଳଦୁଆ ପକାଇବାପାଇଁ ଓଡ଼ିଶା ଆସିଥିବା କଥା କହିଥିଲେ । କେବଳ ଓଡ଼ିଶା ନୁହେଁ, ଭାରତର ବହୁ ଅଞ୍ଚଳ ଯଥା-ପଞ୍ଜାବ, ସୀମାନ୍ତ ପ୍ରଦେଶ, ବିହାର, ବମ୍ବେ, ନାଗପୁର, ଯୁକ୍ତପ୍ରଦେଶ ଓ ଅନ୍ୟାନ୍ୟ ପ୍ରଦେଶର ଲକ୍ଷ ଲକ୍ଷ ଲୋକ ଫରଓ୍ୱାର୍ଡ୍ ବ୍ଲକ୍‌ର କାର୍ଯ୍ୟକ୍ରମକୁ ସମର୍ଥନ କରି ସଭାସମିତିମାନ ଆୟୋଜନ କରି ସେଥିରେ ଯୋଗଦେଲେ । ଏହା ଗାନ୍ଧିଜୀଙ୍କୁ କ୍ଷୁବ୍ଧ କରିଥିଲା ।

୧୯୪୦ ମସିହା ମାର୍ଚ୍ଚ ମାସରେ ବିହାରର ରାମଗଡ଼ଠାରେ ଆବୁଲ କାଲାମ ଆଜାଦଙ୍କ ସଭାପତିତ୍ୱରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ରାଜେନ୍ଦ୍ର ପ୍ରସାଦ ଉପ-ସଭାପତି କାର୍ଯ୍ୟ ପରିଚାଳନା କରିଥିଲେ । ସୁଭାଷ ବୋଷ ସେହିଠାରେ ଫରଓ୍ୱାର୍ଡ୍ ବ୍ଲକ୍‌ର Anti Compromise Conference କରିଥିଲେ । ତାଙ୍କର ଉପ-ସଭାପତି ଥିଲେ ଜନପ୍ରିୟ କୃଷକ ନେତା ସହଜାନନ୍ଦ । କଂଗ୍ରେସ ରାମଗଡ଼ ସମ୍ମିଳନୀରେ କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥା ଓ ସମୟ ସ୍ଥିର ନକରି କେବଳ ଆନ୍ଦୋଳନ ଆରମ୍ଭ କରିବ ବୋଲି ନିଷ୍ପତ୍ତି ଗ୍ରହଣ କରିଥିଲା । ଅପରପକ୍ଷରେ ସୁଭାଷ ବୋଷ ଇଂରେଜ ସରକାରଙ୍କୁ ଦେଶରୁ ହଟାଇବାପାଇଁ ନିରନ୍ତର ଆନ୍ଦୋଳନ କରିବାକୁ ଦେଶବାସୀଙ୍କୁ ଆହ୍ୱାନ ଦେଲେ । ସେ ଜନତାଙ୍କୁ ଭାବବିହ୍ୱଳ କଣ୍ଠରେ କହିଥିଲେ, "ଗାନ୍ଧି, ଜବାହରଲାଲ କିମ୍ବା ଆଜାଦଙ୍କର ଏ ଦେଶ ନୁହେଁ । ଦେଶ ମଧ୍ୟ ଆମର । ଭାରତବର୍ଷ ଭାରତ ଅଧିବାସୀମାନଙ୍କର । କିଏ ଆସୁ ବା ନ ଆସୁ, ସେକଥା ହିସାବ କରିବାର ସମୟ ସରିଯାଇଛି । ଯଦି କେହି ନ ଆସନ୍ତି, ତେବେ ମୁଁ ଏକାକୀ ମୋର

ମୁକ୍ତିକାମୀ ଦେଶବାସୀଙ୍କର ସଂଗ୍ରାମୀ ପ୍ରତିନିଧି ହେବି । ୧୮୫୭ ମସିହାର ବିଦ୍ରୋହୀ ଭାରତବର୍ଷ ଇଂରେଜଙ୍କର ପ୍ରଭୁତ୍ୱ ଅସ୍ୱୀକାର କରି ଯେଉଁ ଝଣ୍ଡା ଦର୍ପରେ ଟେକି ଧରିଥିଲା ସେହି ଝଣ୍ଡା ଟେକି ମୁଁ ଦର୍ପରେ ଆଗେଇଯିବି ।" ରାମଗଡ଼ ଫରୱାର୍ଡ ବ୍ଲକ୍ ସମ୍ମେଳନର ସଫଳତା ଦେଖି କଂଗ୍ରେସ ନେତାମାନେ ବିସ୍ମିତ ହେଲେ ।

ଏହା ପରେ ଏପ୍ରିଲ ୬ ତାରିଖଠାରୁ ଜାଲିଆନାୱାଲାବାଗ ସପ୍ତାହ ସ୍ମାରକୀ ସର୍ବଭାରତୀୟ ସ୍ତରରେ ପାଳନ କରାଯିବାପାଇଁ ସ୍ଥିରୀକୃତ ହୋଇଥିଲା । ୧୯୪୦ ମସିହା ଜୁନ୍ ମାସରେ ଫରୱାର୍ଡ ବ୍ଲକ୍‌ର ଦ୍ୱିତୀୟ ଅଧିବେଶନରେ ସୁଭାଷ ବୋଷ ଇଂରେଜ ଭାରତକୁ ସ୍ୱାଧୀନତା ଦେବାକୁ ସ୍ପଷ୍ଟ ଭାବରେ ଦାବି ଉଠାଇଥିଲେ । ସୁଭାଷ ଏହା ପରେ ମୁସଲିମ୍ ଲିଗ୍‌ର ସଭାପତି ମହମ୍ମଦ ଅଲ୍ଲି ଜିନ୍ନାଙ୍କ ସହିତ ଆଲୋଚନା କରି ତାଙ୍କୁ ପ୍ରସ୍ତାବ ଦେଇଥିଲେ ଯେ ସମସ୍ତେ ମିଳିମିଶି ସଂଗ୍ରାମ କରି ଭାରତର ସ୍ୱାଧୀନତା ହାସଲ କଲେ, ଜିନ୍ନା ହିଁ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ହେବେ । ସେ ହିନ୍ଦୁ ମହାସଭାର ସଭାପତି ବୀର ସବରକରଙ୍କ ସହିତ ମଧ୍ୟ ସାକ୍ଷାତ କରି ହିନ୍ଦୁ-ମୁସଲିମ୍‌ଙ୍କର ଏକତା ହିଁ ଭାରତକୁ ଶକ୍ତିଶାଳୀ କରିବ ବୋଲି ଦୃଢ଼ ଯୁକ୍ତି ବାଢ଼ିଥିଲେ । କିନ୍ତୁ ଦୁର୍ଭାଗ୍ୟର ବିଷୟ ଯେ, ଜିନ୍ନାଙ୍କ ଲକ୍ଷ୍ୟ ଥିଲା ଦେଶକୁ ଦୁଇ ଭାଗରେ ବିଭକ୍ତ କରିବା ଏବଂ ସବରକରଙ୍କର ଚିନ୍ତାଧାରା ଥିଲା ହିନ୍ଦୁମାନଙ୍କୁ ଏକ ଲଢୁଆ ଜାତିରେ ପରିଣତ କରିବା । ଜିନ୍ନା ସୁଭାଷଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ ।

ସାରାଦେଶରେ ଯୁଦ୍ଧକାଳୀନ ଜରୁରୀ ପରିସ୍ଥିତି ଜାରି କରାଗଲା । ଆଭ୍ୟନ୍ତରୀଣ ଶୃଙ୍ଖଳା ରକ୍ଷା ଆଳରେ ସବୁଆଡ଼େ ପୋଲିସ ଲଗାଇ ଲୋକମାନଙ୍କୁ ଦମନ କରାଗଲା । ସୁଭାଷ ବୋଷ ଦେଶର ଜନସାଧାରଣଙ୍କୁ ସମସ୍ତ ତଥ୍ୟ ଓ ଘଟଣାବଳୀ ସମ୍ପର୍କରେ ସଚେତନ କରାଇବାକୁ କଲିକତାସ୍ଥିତ ଶ୍ରଦ୍ଧାନନ୍ଦ ପାର୍କରେ ଏକ ବିରାଟ ଜନସଭାର ଆୟୋଜନ କରି ତାଙ୍କ ଭାଷଣରେ କହିଲେ ଯେ, ସୁଭାଷ ବୋଷ ନଗଣ୍ୟ ହେଉ, ଦୁର୍ବଳ ହେଉ, ଫରୱାର୍ଡ ବ୍ଲକ୍ ତୁଚ୍ଛ ହେଉ, ସେଥିରେ କିଛି ଯାଏ ଆସେ ନାହିଁ; କିନ୍ତୁ ଦେଶର-ଜାତିର ଶତ୍ରୁ ବ୍ରିଟିଶ୍ ସ୍ୱେଚ୍ଛାଚାରୀ ଶାସନକୁ ସେ କୌଣସି ମତେ କ୍ଷମା କରିପାରିବେ ନାହିଁ । ସୁଭାଷ ବୋଷଙ୍କର କାର୍ଯ୍ୟକଳାପ ଓ ଉତ୍ତେଜନାମୂଳକ ବକ୍ତୃତାରେ ବ୍ୟତିବ୍ୟସ୍ତ ହୋଇପଡ଼ି ସରକାର ପ୍ରମାଦ ଗଣିଲେ । ସାରା ଭାରତରେ ବ୍ରିଟିଶବିରୋଧୀ ମନୋଭାବ ଉଜାଗର କରିବାରେ ଫରୱାର୍ଡ ବ୍ଲକ୍‌ର କର୍ମୀମାନେ ସଫଳ ହୋଇପାରିଥିଲେ । ଇଂରେଜ ସରକାର ନୂତନ ପରିସ୍ଥିତିର ମୁକାବିଲା କରିବାକୁ ସୁଭାଷ ବୋଷଙ୍କୁ ୧୯୪୦ ମସିହା ଜୁଲାଇ ୨ ତାରିଖରେ ବନ୍ଦୀ କଲେ ଓ ତାଙ୍କର ହଜାର ହଜାର ସହକର୍ମୀଙ୍କୁ ମଧ୍ୟ ବିନା ବିଚାରରେ ଜେଲ୍‌ରେ ଭର୍ତ୍ତି କଲେ । ସୁଭାଷ ବୋଷ ଜେଲ୍‌ଖାନା ଭିତରେ ଇଂରେଜ ସରକାରଙ୍କୁ ଚରମ ବାଣୀ ଶୁଣାଇଲେ ଯେ ତାଙ୍କର ଶୀଘ୍ର ବିଚାର କର କିମ୍ବା ଖଲାସ କର ।

୧୯୪୦ ମସିହା ଜୁଲାଇ ୨୭ ତାରିଖରେ ପୁନାଠାରେ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ ବସିଥିଲା । କିନ୍ତୁ କଂଗ୍ରେସ ପକ୍ଷରୁ ତାଙ୍କୁ କଲିକତାର ପ୍ରେସିଡେନ୍ସି ଜେଲ୍‌ରେ ବିନା ବିଚାରରେ ଅଟକ ରଖାଯାଇଥିଲେ ମଧ୍ୟ କୌଣସି ଉଦ୍‌ବେଗ ପ୍ରକାଶ ପାଇନଥିଲା କିମ୍ବା ତାଙ୍କୁ ଖଲାସ କରିବାକୁ ଦାବି ହୋଇନଥିଲା । ଜେଲ୍‌ରେ ଥିବା ସମୟରେ ଅକ୍ଟୋବର ୨୮ ତାରିଖରେ ସୁଭାଷ ଆଇନ୍ ସଭାର ସଦସ୍ୟ ରୂପେ ବିନା ପ୍ରତିଦ୍ୱନ୍ଦ୍ୱିତାରେ ନିର୍ବାଚିତ ହୋଇଥିଲେ । ସୁଭାଷ ସରକାରଙ୍କୁ ଏକ ଚିଠି ଲେଖି ଜଣାଇଦେଇଥିଲେ ଯେ ତାଙ୍କୁ ଯଦି ମୁକ୍ତି ଦିଆନଯାଏ ତେବେ ସେ ନଭେମ୍ବର ୨୯ ତାରିଖଠାରୁ ନିଜର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଅନଶନ ଜାରି ରଖିବେ । ସରକାର ଏହି ଧମକପୂର୍ଣ୍ଣ ଚିଠିକୁ ଭ୍ରୂକ୍ଷେପ କରିନଥିଲେ । କିନ୍ତୁ ସୁଭାଷ ଅନଶନ ଆରମ୍ଭ କରିବାର ୬ ଦିନ ପରେ ଡିସେମ୍ବର ୫ ତାରିଖ ଦିନ ତାଙ୍କୁ ଜେଲ୍‌ରୁ ଖଲାସ କରିଦେଲେ । ଖଲାସ କରିବା ସମୟରେ ସର୍ତ୍ତ ରଖିଥିଲେ ଯେ ସୁଭାଷ ତାଙ୍କ ଏଲିଗିନ୍ ରୋଡ଼ ବାସଭବନରେ ଗୃହବନ୍ଦୀ ଭାବରେ ରହିବେ ଏବଂ ସରକାରଙ୍କର ବିନାନୁମତିରେ ସେ ଗୃହ ପରିସର ମଧ୍ୟରୁ ବାହାରକୁ ଯାଇପାରିବେ ନାହିଁ ଓ କୌଣସି ରାଜନୈତିକ ଦଳ ସହିତ ସଂପର୍କ ରଖିପାରିବେ ନାହିଁ । ଫରୱାର୍ଡ଼ ଖବରକାଗଜରେ ସୁଭାଷ 'The Day of Reckoning' ଶୀର୍ଷକ ଏକ ପ୍ରବନ୍ଧରେ ଲେଖିଥିଲେ ଯେ ସରକାରଙ୍କ ବିରୁଦ୍ଧରେ ଉତ୍ତେଜନା ସୃଷ୍ଟି କରୁଥିବା ଅଭିଯୋଗରେ ସରକାର ତାଙ୍କ ବିରୁଦ୍ଧରେ ଏକ ରାଜଦ୍ରୋହ ମାମଲା ଆରମ୍ଭ କରିଥିଲେ ।

ସୁଭାଷ ଗୃହବନ୍ଦୀ ଥିବା ସମୟରେ ଓଡ଼ିଶାର ତିନି ଜଣ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ଓ ଯଦୁମଣି ମଙ୍ଗରାଜଙ୍କୁ ତାଙ୍କ ବାସଭବନକୁ ଡକାଇ ଫରୱାର୍ଡ଼ ବ୍ଲକ୍‌ର ଭବିଷ୍ୟତ କାର୍ଯ୍ୟପନ୍ଥା ସମ୍ବନ୍ଧରେ ଆଲୋଚନା କରିଥିଲେ । ସୁଭାଷ ବୋଷ ଜର୍ମାନୀ ଓ ଜାପାନ୍ ମିତ୍ରପକ୍ଷ ବିରୁଦ୍ଧରେ ଯୁଦ୍ଧରେ ଜିଣିବାର ଖୁବ୍ ସମ୍ଭାବନା ଥିବା ସେମାନଙ୍କୁ କହିଥିଲେ । ସୁଭାଷ ବୋଷ ୧୯୪୦ରେ ମୁସଲିମ୍ ଲିଗ୍‌ର ଲାହୋର ଅଧିବେଶନରେ ପାକିସ୍ତାନ ଗଠନ ପ୍ରସ୍ତାବ ଗୃହୀତ ହୋଇଥିବାରୁ ଅତ୍ୟନ୍ତ ଚିନ୍ତିତ ଥିଲେ ଏବଂ ସେ ଆସାମ, ବିହାର ଓ ଓଡ଼ିଶାରେ ମୁସଲିମ୍ ସହଯୋଗରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ସମସ୍ତଙ୍କୁ ପରାମର୍ଶ ଦେଇଥିଲେ । ୧୯୪୧ ମସିହା ଡିସେମ୍ବର ମାସରେ ସୁଭାଷ ବୋଷଙ୍କ ଭାରତରୁ ପଳାୟନ ପରେ ତାଙ୍କ ଭାଇ ଶରତ ଚନ୍ଦ୍ର ବୋଷଙ୍କୁ ଅନ୍ତରୀଣ ବନ୍ଦୀ କରାଯିବାରୁ ବଂଗ ଓ ଆସାମ ପ୍ରଦେଶରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇପାରି ନଥିଲା । କିନ୍ତୁ ପଣ୍ଡିତ ନୀଳକଣ୍ଠ ଦାସଙ୍କର ନେତୃତ୍ୱ ବଳରେ ପାରଳାଖେମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବ, କଂଗ୍ରେସ ନେତା ଗୋଦାବରୀଶ ମିଶ୍ର ଓ ମୁସଲିମ୍ ଲିଗ୍

ନେତା ଶୋଭନ୍ ଖାଁଙ୍କୁ ଘେନି ଓଡ଼ିଶା ମିଳିତ ମନ୍ତ୍ରିମଣ୍ଡଳ ଗଢ଼ାଯାଇଥିଲା । ପଣ୍ଡିତ ନୀଳକଣ୍ଠ ଦାସ ଓଡ଼ିଶାର ବିଧାନସଭାର ସଦସ୍ୟ ନଥିଲେ, ତଥାପି ସେ ସୁଭାଷ ବୋଷଙ୍କ ନିର୍ଦ୍ଦେଶକୁ ଓଡ଼ିଶାରେ ରୂପାୟିତ କରିପାରିଥିଲେ ।

## ଦେଶପାଇଁ ବିଦେଶ ଯାତ୍ରା

ସୁଭାଷ ବୋଷ ଗୃହବନ୍ଦୀ ଥାଇ ଭାରତର ସ୍ୱାଧୀନତା ପାଇବାକୁ ବିଦେଶୀ ଶକ୍ତିମାନଙ୍କର ସହାୟତାର ଆବଶ୍ୟକତା ରହିଛି ବୋଲି ହୃଦୟଙ୍ଗମ କରିପାରିଥିଲେ । ତାଙ୍କ ୟୁରୋପ ରହଣି ସମୟରେ ସେ ଇଟାଲୀ ଯାଇ ମୁସୋଲିନଙ୍କ ସହିତ ସାକ୍ଷାତ କରି ଭାରତ ଅବସ୍ଥା ସମ୍ବନ୍ଧରେ ଆଲୋଚନା କରିଥିଲେ । ସେ ମଧ୍ୟ ବର୍ଲିନ୍ ଯାଇ ଆଡଲଫ୍ ହିଟଲରଙ୍କ ସହିତ ସାକ୍ଷାତ କରି ତାଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ସଂପର୍କ ସ୍ଥାପନ କରିଥିଲେ । ସେ ନିଷ୍ଚିତ ଥିଲେ ଯେ ଜର୍ମାନୀ ଓ ଇଟାଲୀ ତାଙ୍କ ଉଦ୍ୟମରେ ସହାୟତା କରିବେ । ସୁଭାଷ ନିଜ ପୁତୁରା ଡାକ୍ତରୀ ଛାତ୍ର ଶିଶିର ବୋଷଙ୍କୁ ନିଜର ପଳାୟନ ଯୋଜନା ସଂପର୍କରେ କହି ତାଙ୍କୁ କାର୍‌ରେ ଘରୁ ବହୁ ଦୂରକୁ ନେଇଯିବାକୁ ପ୍ରସ୍ତୁତ ରହିବାକୁ କହିଥିଲେ । କୌଣସିମତେ ଭାରତ ତ୍ୟାଗ କରିବାକୁ ସେ ସିଦ୍ଧାନ୍ତ ଗ୍ରହଣ କଲେ । ଏଲଗିନ୍ ରୋଡ଼ସ୍ଥିତ ସୁଭାଷଙ୍କ ଗୃହ ଚାରିପଟେ ୬୨ ଜଣ ପୋଲିସ୍ କର୍ମଚାରୀ ସାଧା ପୋଷାକରେ ତାଙ୍କ ଚାଲିଚଳନ ଉପରେ ଦିବାନିଶି ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି, କିନ୍ତୁ ସୁଭାଷଙ୍କର ସୁଚିନ୍ତିତ ପଳାୟନ ଯୋଜନାକୁ ତାହା ପ୍ରତିହତ କରିପାରି ନଥିଲା । ସେ ଗୃହରେ ବନ୍ଦୀ ଥିବା ଅବସ୍ଥାରେ ସାଂଘାତିକ ପୀଡ଼ିତ ଥିବାର ଅଭିନୟ କରୁଥିଲେ ଏବଂ କୌଣସି ବାହାର ଲୋକ ଓ ବନ୍ଧୁବାନ୍ଧବଙ୍କୁ ସାକ୍ଷାତ ମଧ୍ୟ କରୁନଥିଲେ ।



ୟୁରୋପରେ ସୁଭାଷ

୧୯୪୧ ମସିହା ଜାନୁଆରି ୧୭ ତାରିଖ ମଧ୍ୟରାତ୍ରିରେ ବି.ଏଲ୍.ଏ.- ୭୧୬୯ ନମ୍ବର ଥିବା ଏକ କାର୍‌ରେ

ସୁଭାଷ ମୁସଲମାନ ବେଶରେ ନିଜ ପୁତୁରା ସହିତ କଲିକତାରୁ ସୁଦୂର ଧାନବାଦକୁ ପଳାୟନ କଲେ । ଧାନବାଦଠାରେ ସେ ପୁତୁରା ଅଶୋକ ବୋଷଙ୍କ ଘରେ କିଛି ଘଣ୍ଟା ବିଶ୍ରାମ କଲେ ଏବଂ ୧୮ ତାରିଖ ଦିନ ଧାନବାଦରୁ ବାହାରି ଗୋମୋ ଷ୍ଟେସନରେ ପହଞ୍ଚିଲେ । ସେଠାରୁ କାଲ୍‌କା ମେଲ୍‌ରେ ସେ ଦିଲ୍ଲୀରେ ପହଞ୍ଚିଲେ । ପରଦିନ ଫ୍ରଣ୍ଟିୟର୍ ମେଲ୍ ଯୋଗେ ପେଶୱାରରେ ପହଞ୍ଚିଲେ । ସେତେବେଳେ ତାଙ୍କ ସାଙ୍ଗରେ ଥିଲେ ଭଗତରାମ ଓ ଆବିଦ୍ ଖାଁ । ପେଶୱାରରୁ ବହୁ କଷ୍ଟରେ ଜଣେ ସ୍ଥାନୀୟ ଲୋକର ସହାୟତାରେ ଭାରତ ସୀମାନ୍ତ ପର୍ଯ୍ୟନ୍ତ ଗଲେ ଏବଂ ସେଠାରୁ ତିନି ଦିନ କାଳ ଦୁର୍ଗମ ବଣ-ଜଙ୍ଗଲ-ପାହାଡ଼ିଆ ରାସ୍ତାରେ ଚାଲି ଚାଲି କାବୁଲରେ ପହଞ୍ଚିଲେ । ଫେବ୍ରୁଆରି ୨ ତାରିଖ ଦିନ ସେ ଜର୍ମାନ ଦୂତାବାସ ସହିତ ସଂପର୍କ ସ୍ଥାପନ କଲେ ଏବଂ ୫ ତାରିଖରେ ଜର୍ମାନ ସରକାର ତାଙ୍କୁ କାବୁଲରୁ ବର୍ଲିନ୍ ନେଇଯିବାର ସମସ୍ତ ବନ୍ଦୋବସ୍ତ କରିଛନ୍ତି ବୋଲି ଖବର ପାଇ ସୁଭାଷ ଉତ୍ସାହିତ ହେଲେ । କାବୁଲ ସହରରେ ଉତ୍ତମଚାନ୍ଦ ମାଲହୋତ୍ରା ତାଙ୍କୁ ଆଶ୍ରୟ ଦେଇଥିଲେ ଏବଂ ସମସ୍ତ ପ୍ରକାର ନିଷ୍କପଟ ସହାୟତା ଯୋଗାଇ ଦେଇଥିଲେ । ଉତ୍ତମଚାନ୍ଦଙ୍କ ଘରେ ସୁରକ୍ଷିତ ରହି ସୁଭାଷ ଇଟାଲୀର ରାଷ୍ଟ୍ରଦୂତଙ୍କୁ ମଧ୍ୟ ସାକ୍ଷାତ କରିଥିଲେ । ବର୍ଲିନ୍ ଯିବାପାଇଁ ସୁଭାଷଙ୍କୁ କାବୁଲରେ ପ୍ରାୟ ୬ ସପ୍ତାହ ଅପେକ୍ଷା କରିବାକୁ ପଡ଼ିଥିଲା । ସୁଭାଷଙ୍କ ନାମକୁ ଇଟାଲୀୟ ନାମ ଓରଲାଣ୍ଡୋ ମୋଜାଟା ନାମରେ ନାମିତ କରି ତାଙ୍କୁ ଏକ ପାସପୋର୍ଟ ଦିଆଯାଇଥିଲା । ଏହି ପାସପୋର୍ଟ ସହାୟତାରେ ତାଙ୍କୁ କାବୁଲଠାରୁ ମସ୍କୋ ବାଟ ଦେଇ ବିମାନ ଯୋଗେ ବର୍ଲିନ୍ ଯିବାର ସୁବିଧା ହୋଇଥିଲା । ମସ୍କୋ ଯିବା ପୂର୍ବରୁ ସୁଭାଷ ଭଗତରାମଙ୍କୁ ଭାରତ ଫେରିଯିବାକୁ କହିଥିଲେ । ସୁଭାଷଙ୍କ ସାଥିରେ ଜଣେ ଜର୍ମାନ ଇଂଜିନିୟର ସହଯାତ୍ରୀ ଥିଲେ । ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ, ଏହି ସମୟରେ ଋଷ ସରକାର ସହିତ ଜର୍ମାନୀର ମିତ୍ରତା ରହିଥିଲା ଓ ଇଂଲଣ୍ଡ ସହିତ ମଧ୍ୟ ସୁସଂପର୍କ ରହିଥିଲା । ତେଣୁ ଇଂଲଣ୍ଡର ପ୍ରଧାନ ଶତ୍ରୁ ଭାବେ ବିବେଚିତ ସୁଭାଷ ବୋଷଙ୍କୁ ପ୍ରତ୍ୟକ୍ଷ ସାହାଯ୍ୟ ଦେବାକୁ ଋଷ ସରକାର ଅକ୍ଷମତା ପ୍ରକାଶ କରିଥିଲେ ମଧ୍ୟ ତାଙ୍କୁ ବର୍ଲିନ୍ ପର୍ଯ୍ୟନ୍ତ ଯିବାକୁ ଲୁକ୍‌କାୟିତ ଭାବରେ ସମସ୍ତ ସହାୟତା ଯୋଗାଇ ଦେଇଥିଲେ ।

୧୯୪୧ ମସିହା ମାର୍ଚ୍ଚ ୨୮ ତାରିଖରେ ସୁଭାଷ ମସ୍କୋରେ ପହଞ୍ଚିଥିଲେ । ମସ୍କୋର ଶାସନକର୍ତ୍ତା ଷ୍ଟାଲିନଙ୍କୁ ସୁଭାଷ ସାକ୍ଷାତ କଲେ । ଭାରତର ସ୍ୱାଧୀନତାପାଇଁ ସୁଭାଷଙ୍କର ଇଂରେଜ ସରକାରଙ୍କ ସହିତ ଶତ୍ରୁତାକୁ ଷ୍ଟାଲିନ୍ ପସନ୍ଦ କରିନଥିଲେ, କିନ୍ତୁ ଭାରତରୁ ଇଂରେଜ ଶାସନର ବିଲୋପକୁ ସେ ନୈତିକ ସମର୍ଥନ ଦେଇଥିଲେ ।



ଜର୍ମାନୀରେ ଆଡ଼୍‌ଲଫ୍ ହିଟ୍‌ଲରଙ୍କ ସହ ସୁଭାଷ

## ଜର୍ମାନୀରେ ସୁଭାଷ

ମସ୍କୋଠାରୁ ବିମାନରେ ଯାଇ ଏପ୍ରିଲ ୩ ତାରିଖରେ ସୁଭାଷ ବର୍ଲିନ୍‌ରେ ପହଞ୍ଚିଲେ । ବର୍ଲିନ୍‌ରେ ପହଞ୍ଚିବାର ତିନି ଦିନ ପରେ ସୁଭାଷ ବୋଷ ଜର୍ମାନ ସରକାରଙ୍କୁ ଏକ ସ୍ମାରକପତ୍ର ପ୍ରଦାନ କରିଥିଲେ । ପ୍ରଥମେ ହିଟଲର ଭାରତର ସ୍ୱାଧୀନତା ଆନ୍ଦୋଳନପାଇଁ ସହାନୁଭୂତିଶୀଳ ନଥିଲେ । କିନ୍ତୁ ସୁଭାଷଙ୍କ ସହିତ ଭେଟ ହେବା ପରେ ତାଙ୍କୁ ଜଣେ ପ୍ରଚଣ୍ଡ ପ୍ରତିଭାବାନ ନେତା ଭାବରେ ସମ୍ମାନ ଦେଇଥିଲେ ଏବଂ ବ୍ରିଟିଶ ସରକାର ନିଜର ପଶୁବଳ ପ୍ରୟୋଗ କରି ଭାରତକୁ ଶାସନ କରୁଛି ବୋଲି ଅନୁଭବ କରି ଶକ୍ତି ପ୍ରୟୋଗ ବିନା ଭାରତର ସ୍ୱାଧୀନତା ସମ୍ଭବ ନୁହେଁ ବୋଲି ସୁଭାଷଙ୍କ ସହିତ ଏକମତ ହୋଇଥିଲେ । ହିଟଲର ଘୋଷଣା କରିଥିଲେ ଯେ ଭାରତର ସ୍ୱାଧୀନତା ଲାଗି ସୁଭାଷ ବୋଷ ଯେଉଁ ସଂଗଠନ କରୁଛନ୍ତି, ଜର୍ମାନ ତାଙ୍କୁ ନିଃସର୍ତ୍ତ ସହାୟତା ଯୋଗାଇଦେବ । ହିଟଲର ସୁଭାଷଙ୍କ ସହିତ ସାକ୍ଷାତ କାଳରେ ତାଙ୍କୁ କହିଥିଲେ, "Your Excellency, be assured, my Government will always stand by the word of independence for your country given by me under all circumstances."

ସୁଭାଷ ବୋଷ ବର୍ଲିନ୍‌ରେ ପହଞ୍ଚିବା ପରେ ପ୍ରଥମେ ହୋଟେଲ ଏକ୍ସପ୍ଲାନେଟ୍‌ରେ ରହିଥିଲେ । ସୁଭାଷ ବୋଷଙ୍କ ସହ ପ୍ରାରମ୍ଭିକ ଆଲୋଚନା ପରେ ଜର୍ମାନ ସରକାର ତାଙ୍କର ବୈଦେଶିକ ବିଭାଗରେ ଏକ Special Bureau for India (ସ୍ୱତନ୍ତ୍ର ଭାରତ ବିଭାଗ ବା କାର୍ଯ୍ୟାଳୟ) ଖୋଲିଥିଲେ । ସୁଭାଷ ବୋଷ ଭିଏନାରୁ ତାଙ୍କ ଅଧୀନରେ ବ୍ୟକ୍ତିଗତ ସହାୟକ ରୂପେ କାର୍ଯ୍ୟ କରିବାକୁ କୁମାରୀ ଏମିଲି ଶେଙ୍କେଲଙ୍କୁ ଡକାଇଥିଲେ । ସୁଭାଷ ଜର୍ମାନୀର ଯତ୍‌କିଞ୍ଚିତ୍ ସାହାଯ୍ୟରେ ଉତ୍ସାହିତ ହୋଇ ସେଠାରେ Free India Centre (ମୁକ୍ତ ଭାରତ କେନ୍ଦ୍ର)ର ସ୍ଥାପନ କରିଥିଲେ, ଯାହାର ନଭେମ୍ବର ୨ ତାରିଖରେ ଆନୁଷ୍ଠାନିକ ସ୍ଥାପନା ଦିବସ ପାଳିତ ହୋଇଥିଲା । ବହୁ ଉତ୍ସାହୀ ଭାରତୀୟ ଯୁବକଙ୍କୁ ନେଇ ଏହି କେନ୍ଦ୍ର ଆରମ୍ଭ ହେଲା । ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ହବିବୁର ରେହମାନ, ଏନ୍. ଜି. ସ୍ୱାମୀ, ଏନ୍.ଜି. ଗାନପୁଲେ, ଏମ୍.ଆର୍. ବ୍ୟାସ, ଏ.ସି.ଏନ୍. ନାମ୍ବିଆର, ଡକ୍ଟର ସୁଲତାନ ଓ ଡକ୍ଟର ମଲ୍ଲିକ । ସ୍ୱାଧୀନ ଭାରତର ତ୍ରିରଙ୍ଗା ପତାକା ଏହି କେନ୍ଦ୍ରରେ ଉଡ଼ିଲା, କିନ୍ତୁ ପତାକାରେ ଚରଖା ଥିବା ସ୍ଥାନରେ ଏକ ଲମ୍ଫ ପ୍ରଦାନକାରୀ ବାଘ (springing tiger)ର ଚିହ୍ନ ରହିଲା । ବାଘର ଚିହ୍ନ ଥିଲା ଚେତନାର ପ୍ରତୀକ ଏବଂ ବାଘ ଯେପରି କୁଦିପଡ଼ି ତା'ର ଶିକାରକୁ ଝିଙ୍କିନିଏ ସେହିଭଳି ଭାରତର ବିପ୍ଲବୀମାନେ ଇଂରେଜ ସରକାରଙ୍କଠାରୁ କ୍ଷମତା ଛଡ଼ାଇ ଆଣିବେ ।

ଏହା ପୂର୍ବରୁ ଏମିଲି ଶେଙ୍କେଲଙ୍କୁ ସାଙ୍ଗରେ ନେଇ ସୁଭାଷ ବୋଷ ଇଟାଲୀର ରୋମ୍‌ରେ ପହଞ୍ଚିଲେ । ଅବିଭକ୍ତ ଭାରତର ପଞ୍ଜାବ ସିଆଲକୋଟରେ ଜନ୍ମିତ ଆଉ ଜଣେ ବିଦ୍ରୋହୀ ମହମ୍ମଦ ଇକବଲ ଶେଜାଇ ୧୯୪୦ ମସିହାଠାରୁ ରୋମରେ ରହି ରେଡ଼ିଓ ହିମାଳୟ ନାମକ ଏକ ବେତାର କେନ୍ଦ୍ର ସ୍ଥାପନ କରି ବ୍ରିଟିଶ ଶାସକମାନଙ୍କ ବିରୁଦ୍ଧରେ ପ୍ରଚାର ଚଳାଇଥିଲେ । ତାଙ୍କର ଇଟାଲୀ ସରକାରଙ୍କ ସହିତ ଘନିଷ୍ଠତା ଥିଲା । ଉଭୟେ ସୁଭାଷ ବୋଷ ଓ ମହମ୍ମଦ ଇକବଲ ଶେଜାଇ ଭାରତର ସ୍ୱାଧୀନତା ସଂଗ୍ରାମରେ ବିଦେଶରୁ ସହାୟତା ଆଣିବାକୁ ଚେଷ୍ଟା କରିଥିଲେ ମଧ୍ୟ ନିଜ ଭିତରେ ବୁଝାମଣା କରିପାରି ନଥିଲେ । ମହମ୍ମଦ ଇକବଲ ଶେଜାଇ ସୁଭାଷ ବୋଷଙ୍କ ଅଧୀନରେ କାର୍ଯ୍ୟ କରିବାକୁ ରାଜି ନଥିଲେ । କିନ୍ତୁ ସୁଖର କଥା ଯେ ଇଟାଲୀ ସରକାର ସୁଭାଷ ବୋଷଙ୍କର ଭାରତରେ ଥିବା ଲୋକପ୍ରିୟତାକୁ ଲକ୍ଷ୍ୟକରି ତାଙ୍କୁ ସମସ୍ତ ସହାୟତା ଯୋଗାଇ ଦେବେ ବୋଲି ରାଜି ହୋଇଥିଲେ । ସୁଭାଷ ବୋଷଙ୍କର ଉଦ୍ୟମ ଥିଲା ଯେ ବର୍ଲିନ୍‌ରେ ସ୍ୱାଧୀନ ଭାରତ ସରକାର ଗଠିତ ହେବ ଏବଂ ତାକୁ ଜର୍ମାନ, ଜାପାନ, ଇଟାଲୀ ଅବିଳମ୍ବେ ସ୍ୱୀକୃତି ଦେବେ । ସୁଭାଷ ବୋଷଙ୍କୁ ଜର୍ମାନୀ ତରଫରୁ ଅବିଳମ୍ବେ ଚାର୍ଲୋଟେନ୍‌ବର୍ଗରେ ଥିବା ଛଅ,

ସୋଫିନ୍‌ଷ୍ଟ୍ରାସ୍ ଗୃହ (ପୂର୍ବରୁ କେମ୍ପନର୍ ଭିଲା, ବ୍ରିଟିଶ ଦୂତାବାସ)କୁ ତାଙ୍କ କାର୍ଯ୍ୟାଳୟ କରିବାକୁ ଯୋଗାଇ ଦିଆଗଲା । ଏହା ଥିଲା ଜର୍ମାନୀର ସୁଭାଷଙ୍କୁ କୂଟନୈତିକ ସ୍ୱୀକୃତି । ଜର୍ମାନ୍ ସରକାର ତାଙ୍କୁ ଗୋଟିଏ କାର୍ ଓ ଡ୍ରାଇଭର୍, ରୋଷେୟା, ଅର୍ଦ୍ଦଳି, ମାଳୀ ଯୋଗାଇ ଦେଇଥିଲେ । ଜର୍ମାନୀକୁ ଆସିବା ପରେ ଏମିଲି ଶେଙ୍କେଲ ଓ ସେ ଏକତ୍ର ସ୍ୱାମୀ-ସ୍ତ୍ରୀ ଭାବରେ ରହିଥିଲେ । ସୁଭାଷଙ୍କ ନିଷ୍ଠା, କର୍ତ୍ତବ୍ୟପରାୟଣତା ଓ ଦେଶପ୍ରେମର ଗଭୀର ପ୍ରଭାବ ଜର୍ମାନ୍ ସରକାରଙ୍କ ପ୍ରତ୍ୟେକ ଅଫିସରଙ୍କ ଉପରେ ପଡ଼ିଥିଲା ।

ସୁଭାଷ ଯେଉଁ ତିନୋଟି ପ୍ରସ୍ତାବ ଜର୍ମାନୀର ବୈଦେଶିକ ସଚିବ ରିବେନଟ୍ରପ ଓ ପ୍ରଚାରମୁଖ୍ୟ ଗୋବେଲଙ୍କ ସହିତ ଆଲୋଚନା କରି ସମ୍ମତି ପାଇଥିଲେ, ତାହା ମଧ୍ୟରୁ ଗୋଟିଏ ପ୍ରସ୍ତାବ ଥିଲା ଅକ୍ଷଶକ୍ତି (Axis Power) ଯେଉଁ ସମସ୍ତ ଭାରତୀୟ ସୈନ୍ୟମାନଙ୍କୁ ଯୁଦ୍ଧରେ ବନ୍ଦୀ କରିଛନ୍ତି, ସେମାନଙ୍କୁ ନେଇ ଏକ ସ୍ୱାଧୀନ ଭାରତୀୟ ସୈନ୍ୟ ସଂସ୍ଥା 'ଆଜାଦ୍ ହିନ୍ଦ୍ ଫୌଜ' ଗଠନ କରିବା । ସେତେବେଳେ ଯୁଦ୍ଧରେ କ୍ରମାଗତ ଭାବରେ ବିଜୟଲାଭ କରୁଥିବା ଜର୍ମାନ୍ ସରକାରଙ୍କ ପାଖରେ ବହୁ ଭାରତୀୟ ସୈନିକ ବନ୍ଦୀ ଥିଲେ । ପ୍ରଥମେ ସ୍ୱଇଚ୍ଛାରେ ୨,୫୦୦ ଭାରତୀୟ ସୈନିକ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗ ଦେଲେ । ନେତାଜୀଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଆବିଦ ହାସାନ ଏହି ଫୌଜର ଦାୟିତ୍ୱରେ ଥିଲେ । ସେମାନେ ବିଭିନ୍ନ ଧର୍ମ, ଜାତି ଓ ରୀତିନୀତିରେ ବିଶ୍ୱାସ କରୁଥିବା ଭାରତୀୟ । ପରସ୍ପରକୁ ଭେଟିଲେ କିଭଳି ଭାବରେ ପ୍ରଥମେ ସମ୍ଭାଷଣ କରିବେ ତାହା 'ଜୟହିନ୍ଦ' ବୋଲି ସ୍ଥିରୀକୃତ ହେଲା । ଏହି ପରିପ୍ରେକ୍ଷୀରେ ସୁଭାଷ ଚନ୍ଦ୍ର ବୋଷଙ୍କୁ କିଭଳି ସମ୍ବୋଧନ କରାଯିବ ଆଲୋଚନା ହେବା ପରେ ସୃଷ୍ଟି ହେଲା ସମ୍ବୋଧନ 'ନେତାଜୀ' । ସମ୍ମାନ, ସ୍ନେହ, ଆତ୍ମୀୟତାବୋଧର ସମ୍ଭାଷଣ ହେଲା 'ନେତାଜୀ' । ସେହିପରି ରବୀନ୍ଦ୍ରନାଥ ଠାକୁରଙ୍କ ରଚିତ 'ଜନ-ଗଣ-ମନ' ସଂଗୀତକୁ ଜାତୀୟ ସଂଗୀତର ମର୍ଯ୍ୟାଦା ପ୍ରଦାନ କରାଯାଇଥିଲା । ୧୯୪୨ ମସିହା ଜାନୁଆରି ୨୬ ତାରିଖ ଦିନ ବର୍ଲିନ୍‌ର ହୋଟେଲ କାଇଜରହଫ୍‌ଠାରେ ଭାରତର ସ୍ୱାଧୀନତା ଦିବସ ଖୁବ୍ ଆଡ଼ମ୍ବର ସହକାରେ ପାଳିତ ହୋଇଥିଲା । ସେହିଦିନ ଓରଲାଣ୍ଡୋ ମୋଜାଟା ଇଟାଲୀୟ ଛଦ୍ମନାମକୁ ପରିତ୍ୟାଗ କରି ଆତ୍ମପ୍ରକାଶ କଲେ ନେତାଜୀ ସୁଭାଷ ବୋଷ । ଜର୍ମାନୀର ସ୍ୱାଧୀନ ଭାରତ କେନ୍ଦ୍ରରେ କିମ୍ବା ଯେଉଁଠାରେ ଭାରତୀୟମାନେ ପରସ୍ପରକୁ ଭେଟିଲେ ସେମାନେ ଆଉ ଗୁଡ୍ ମର୍ଣ୍ଣିଙ୍ଗ୍, ହ୍ୟାଲୋ ନ କହି ପରସ୍ପରକୁ 'ଜୟହିନ୍ଦ୍' କହି ଅଭିବାଦନ ଜଣାଉଥିଲେ । ହିନ୍ଦ୍ ଅର୍ଥ ଭାରତ । ଜୟହିନ୍ଦ୍ ଅର୍ଥ ଭାରତର ଜୟ ହେଉ । ଆଜି ମଧ୍ୟ ଭାରତୀୟ ସେନା ବାହିନୀରେ ସାଧାରଣ ସୈନିକଠାରୁ ସର୍ବୋଚ୍ଚ ପଦାଧିକାରୀ ଜେନେରାଲ ପର୍ଯ୍ୟନ୍ତ ପରସ୍ପରକୁ 'ଜୟହିନ୍ଦ୍' କହି ସମ୍ବୋଧନ କରନ୍ତି । ୧୯୪୨ ମାର୍ଚ୍ଚ ୨୯ ତାରିଖରେ ହିଟଲରଙ୍କ ଉପସ୍ଥିତିରେ ସୁଭାଷ



ସୁଭାଷଙ୍କ ପତ୍ନୀ ଏମିଲି ଓ କନ୍ୟା ଅନୀତା

ନାଜୀ ସେନାର ଅଭିବାଦନ ଗ୍ରହଣ କରିଥିଲେ । ହେଲ୍ ହିଟଲର ଓ ହେଲ୍ ଜେନେରାଲ ବୋଷ ଧ୍ୱନିରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା ।

୧୯୪୧ ମସିହା ଜୁନ୍ ମାସ ୨୨ ତାରିଖ ଋଷ-ଜର୍ମାନ୍ ସହିତ ହୋଇଥିବା ପୂର୍ବ ସମସ୍ତ ଚୁକ୍ତିକୁ ଭଂଗକରି ଋଷ ଆକ୍ରମଣ କଲା । ଏହା ସୁଭାଷ ଚନ୍ଦ୍ର ବୋଷଙ୍କୁ ବିବ୍ରତ କରିଦେଇଥିଲା । ଡିସେମ୍ବର ୭ ତାରିଖରେ ଜାପାନ ଆମେରିକାର ଶକ୍ତିଶାଳୀ ନୌଘାଟି ପର୍ଲ ହାର୍‌ବୋର୍ ଉପରେ ଆକ୍ରମଣ କଲା । ଜାପାନ ସେହିଦିନଠାରୁ ଜର୍ମାନୀ ଓ ଇଟାଲୀ ସପକ୍ଷରେ ମିତ୍ରଶକ୍ତି ବିରୁଦ୍ଧରେ ଯୁଦ୍ଧରେ ଅବତୀର୍ଣ୍ଣ ହେଲା । ଖୁବ୍ ଅଳ୍ପ ସମୟ ଭିତରେ ଜାପାନ ଫିଲିପାଇନ୍ସ, ଇଣ୍ଡୋନେସିଆ, ମାଳୟ (ମାଲେସିଆ) ଓ ବର୍ମାକୁ ଅକ୍ତିଆର କରିନେଲା । ୧୯୪୨ ମସିହା ଫେବୃଆରି ମାସ ୧୫ ତାରିଖରେ ଜାପାନୀ ସୈନ୍ୟମାନେ ସିଂଗାପୁର ଅଧିକାର କରିନେଲେ । ୧୯୪୨ ମାର୍ଚ୍ଚ ମାସରେ ଜାପାନୀ ସୈନ୍ୟମାନେ ରେଂଗୁନ୍ ଦଖଲ କରିନେବାରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଭାରତର ଦ୍ୱାରଦେଶରେ ପହଞ୍ଚିଗଲା ।

ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଜାପାନର ଯୁଦ୍ଧର ଏହି ସଫଳତାକୁ ନଜର କରି ଭାରତର ମୁକ୍ତି ସଂଗ୍ରାମ ପୂର୍ବ ସୀମାନ୍ତରୁ ଆରମ୍ଭ କରିବାପାଇଁ ମନସ୍ଥ କଲେ । ୧୯୪୨ ମସିହା ମେ' ମାସରେ ସେ ହିଟଲରଙ୍କ ସହିତ ଦେଖାକରି ତାଙ୍କର ନୂତନ ଆଭିମୁଖ୍ୟ ସଂପର୍କରେ ଜଣାଇଲେ ଏବଂ ହିଟଲର ତାଙ୍କୁ ଜାପାନ ଯିବାପାଇଁ ସମସ୍ତ ପ୍ରକାର ବନ୍ଦୋବସ୍ତ କରିଦେବାର ପ୍ରତିଶ୍ରୁତି ଦେଲେ । ସୁଭାଷ ଚନ୍ଦ୍ର ବୋଷ ପୂର୍ବରୁ ଜାପାନ ଶାସକମାନଙ୍କ ସହିତ ଯୋଗସୂତ୍ର

ରଖିଥିଲେ । ଜାପାନରେ ରାସବିହାରୀ ବୋଷ ଭାରତର ସ୍ୱାଧୀନତା ପ୍ରତି ଜାପାନୀମାନଙ୍କ ମଧ୍ୟରେ ଆଗ୍ରହ ସୃଷ୍ଟି କରାଇପାରିଥିଲେ । ରାସବିହାରୀ ବୋଷ ଜାପାନର ଏକ ଉଗ୍ରବାଦୀ ସଂଗଠନ ସହିତ ସଂପର୍କ ପ୍ରତିଷ୍ଠା କରିଥିଲେ । ସେ ଜଣେ ଜାପାନୀ ମହିଳାଙ୍କୁ ବିବାହ କରି ଜାପାନର ନାଗରିକ ହୋଇ ସେଠାରେ 'ଭାରତ ସ୍ୱାଧୀନତା ଲିଗ୍' ପ୍ରତିଷ୍ଠା କରିଥିଲେ । ସେ ଜାପାନୀ ଭାଷାରେ ଭାରତ ବିଷୟରେ ପାଞ୍ଚଟି ପୁସ୍ତକ ରଚନା କରିଥିଲେ ଓ ସଣ୍ଡରଲ୍ୟାଣ୍ଡଙ୍କ ଲିଖିତ 'ପରାଧୀନ ଭାରତ' ପୁସ୍ତକକୁ ଜାପାନୀ ଭାଷାରେ ଅନୁବାଦ କରିଥିଲେ । ସେ ଜାପାନୀ ଭାଷାରେ ଗୋଟିଏ ଖବରକାଗଜ ମଧ୍ୟ ପ୍ରକାଶ କରିଥିଲେ ଏବଂ ଜାପାନର ବିଭିନ୍ନ ଅଞ୍ଚଳ ବୁଲି ଭାରତର ଦୁର୍ଦ୍ଦଶା ସଂପର୍କରେ ବକ୍ତୃତାମାନ ଦେଉଥିଲେ । ସେ ବିଦେଶରେ ବିଶେଷକରି ପୂର୍ବଖଣ୍ଡରେ ଭାରତର ମୁକ୍ତି ଆନ୍ଦୋଳନର ମୂଳଦୁଆ ପକାଇଥିଲେ ।

୧୯୪୨ ମସିହା ମାର୍ଚ୍ଚ ୨୮, ୨୯, ୩୦ ତାରିଖରେ ରାସବିହାରୀ ବୋଷଙ୍କ ସଭାପତିତ୍ୱରେ ମାଳୟ, ହଂକଂ, ସାଂଘାଇ ଓ ଜାପାନର ଭାରତୀୟ ପ୍ରତିନିଧିମାନଙ୍କର ଏକ ସଭା ଅନୁଷ୍ଠିତ ହୋଇ 'ଆଜାଦ୍ ହିନ୍ଦ୍ ସଂଘ' ଗଠନ କରାଗଲା । ୧୯୪୨ ଜୁନ୍ ୧୫ରୁ ୨୩ ତାରିଖ ପର୍ଯ୍ୟନ୍ତ ବ୍ୟାଂକଂରେ ଆଜାଦ୍ ହିନ୍ଦ୍ ସଂଘର ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଆଜାଦ୍ ହିନ୍ଦ୍ ସଂଘର ସଭାପତି ଥିଲେ ରାସବିହାରୀ ବୋଷ । ୧୯୪୨ ଅଗଷ୍ଟ ୮ ତାରିଖରେ ବମ୍ବେଠାରେ ଜାତୀୟ କଂଗ୍ରେସ ଭାରତଛାଡ଼ ପ୍ରସ୍ତାବ ଗ୍ରହଣ କରି ବ୍ରିଟିଶ ସରକାରଙ୍କୁ ଚରମ ବାଣୀ ଶୁଣାଇଦେଲେ । ଏହି ସମ୍ବାଦ ପାଇବା ପରେ ପୂର୍ବ-ଏସିଆର ଭାରତୀୟମାନଙ୍କ ମଧ୍ୟରେ ବିପୁଳ ଉତ୍ସାହ ଦେଖାଦେଲା ।

କ୍ୟାପଟେନ ମୋହନ ସିଂଙ୍କ ଦାୟିତ୍ୱରେ ପ୍ରଥମେ ଆଜାଦ୍ ହିନ୍ଦ୍ ଫୌଜର ଗଠନ କାର୍ଯ୍ୟ ଆରମ୍ଭ ହେଲା। ମାଳୟରେ ଯେଉଁ ଭାରତୀୟ ସୈନ୍ୟମାନେ ଜାପାନ ନିକଟରେ ଆତ୍ମସମର୍ପଣ କରିଥିଲେ, ସେମାନେ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗଦେଲେ। ପ୍ରବାସୀ ଭାରତୀୟମାନେ ବିପୁଳ ଧନରାଶି ଆଜାଦ୍ ହିନ୍ଦ୍ ଫୌଜ ଗଠନପାଇଁ ଦାନ କଲେ। ପରବର୍ତ୍ତୀ ସମୟରେ ସୁଭାଷ ଚନ୍ଦ୍ର ବୋଷ ଆଜାଦହିନ୍ଦୁ ସୁସଂଗଠିତ କଲେ ।

ଜାପାନ ଯିବାକୁ ନୌବାହିନୀର ସହାୟତା ଏକାନ୍ତ ଆବଶ୍ୟକ ଥିଲା। ଜର୍ମାନୀ ଓ ଇଟାଲୀର ନୌବାହିନୀର ତୁଙ୍ଗ ଅଫିସରମାନେ ଏହି ପ୍ରସ୍ତାବରେ ଏକମତ ଥିଲେ ମଧ୍ୟ ଜାପାନ ନୌସେନା ଅଫିସର ଆପତ୍ତି ଉଠାଇ କହିଲେ, ଜଣେ ସିଭିଲିଆନ୍ ଯୁଦ୍ଧ ଜାହାଜରେ ଯିବା ସମ୍ଭବ ନୁହେଁ। କିନ୍ତୁ ଜର୍ମାନୀର ବୈଦେଶିକ ଦପ୍ତରର ଜଣେ ବରିଷ୍ଠ ଅଧିକାରୀ ତଥା ପ୍ରାଚ୍ୟ ସମସ୍ୟା ସମ୍ବନ୍ଧରେ ବିଶେଷଜ୍ଞ ଥିବା ଡକ୍ଟର ଆଡାମ୍ ଭନ୍ ଟ୍ରଟ୍ ଜାପାନୀ ଅଫିସରମାନଙ୍କୁ ଜଣାଇଦେଲେ ଯେ ସୁଭାଷ ଚନ୍ଦ୍ର ବୋଷ ଭାରତୀୟ ମୁକ୍ତିବାହିନୀ (Indian Liberation



କ୍ୟାପ୍‌ଟେନ୍ ମ୍ୟୁସେନ୍‌ବର୍ଗଙ୍କ ସହ ସୁଭାଷ

Army) ର କମାଣ୍ଡର-ଇନ୍-ଚିଫ୍ । ତେଣୁ ତାଙ୍କର ଯୁଦ୍ଧ ଜାହାଜରେ ଯିବାର କୌଣସି ଅସୁବିଧା ହେଲାନାହିଁ । ଜର୍ମାନ୍ ସରକାରଙ୍କର ନେତାଜୀଙ୍କ ପ୍ରତି ଅକୁଣ୍ଠ ସମର୍ଥନ ଦେଖି କର୍ଣ୍ଣେଲ ଇୟାମାତୋ ସବ୍‌ମେରାଇନ (ବୁଡ଼ାଜାହାଜ) ଦ୍ୱାରା କେବଳ ନେତାଜୀ ଯାଇପାରିବେ ବୋଲି ଜଣାଇଥିଲେ ।

## ଜାପାନରେ ନେତାଜୀ

୧୯୪୩ ମସିହା ଫେବୃଆରି ୭ ତାରିଖରେ ସୁଭାଷ ବୋଷ ଟ୍ରେନ୍ ଯୋଗେ 'କୋଏଲ' ବନ୍ଦରକୁ ଗଲେ । ୮ ତାରିଖ ଦିନ ସୁଭାଷ ଚନ୍ଦ୍ର ବୋଷ ଆବିଦ ହାସାନଙ୍କୁ ସାଙ୍ଗରେ ନେଇ କୋଏଲଠାରୁ ପ୍ରଥମେ କ୍ୟାପଟେନ୍ ମ୍ୟୁସେନବର୍ଗଙ୍କ ଅଧୀନରେ ପରିଚାଳିତ ଏକ ଜର୍ମାନ ବୁଡ଼ାଜାହାଜ ସାହାଯ୍ୟରେ ଆଟଲାଣ୍ଟିକ୍ ମହାସାଗର ମଧ୍ୟ ଦେଇ ଆଫ୍ରିକାର ଦକ୍ଷିଣ ପ୍ରଦେଶରେ ଥିବା କେପ୍ ଅଫ୍ ଗୁଡ଼ହୋପ୍ ବନ୍ଦର ପାରହୋଇ ଆଫ୍ରିକାର ଦକ୍ଷିଣ ପୂର୍ବରେ ଥିବା ମାଡାଗାସ୍କର ଦ୍ୱୀପଠାରୁ ୬୦୦ କି.ମି. ପଥ ଅତିକ୍ରମ କଲା ପରେ ଭାରତ ମହାସାଗରରେ ଏପ୍ରିଲ ୨୮ ତାରିଖ ଦିନ ଜର୍ମାନ ସାମରିକ ଜାହାଜ ପରିତ୍ୟାଗ କରି ଜାପାନର ସବମେରାଇନ୍-I-29 ସାହାଯ୍ୟରେ ପ୍ରଶାନ୍ତ ମହାସାଗର ମଧ୍ୟଦେଇ ନେତାଜୀ ତିଳେମାତ୍ର



ଜାପାନୀ ସବ୍‌ମେରାଇନ୍ କ୍ରିଉ -I-29 ରେ ସୁଭାଷ (ଆଗଧାଡ଼ି ବାମରୁ ଦ୍ୱିତୀୟ)ଙ୍କ ଜଳଯାତ୍ରା

ଭୟ ନକରି ନିଜର ବିପଦସଂକୁଳ ଜଳଯାତ୍ରା ଜାରି ରଖିଲେ । ସେହି ସମୟରେ ସେ ବିଭିନ୍ନ ପୁସ୍ତକ ପଢ଼ିବା ସଙ୍ଗେ ସଙ୍ଗେ ନିଜ ରଚିତ 'Indian Struggle' ପୁସ୍ତକଟିର ଦ୍ୱିତୀୟ ଭାଗ ରଚନା କରିବାରେ ବ୍ୟସ୍ତ ଥିଲେ । ଘୋର ବିପଦପୂର୍ଣ୍ଣ ୯୦ ଦିନ ବୁଡ଼ାଜାହାଜ ସାହାଯ୍ୟରେ ଯାତ୍ରା କରି ସୁଭାଷ ବୋଷ ସୁମାତ୍ରା ଦ୍ୱିପର ଉତ୍ତରରେ ସାବାଂଏଠାରେ ପହଞ୍ଚିଲେ । ସେଠାରୁ ଜାପାନର କର୍ଣ୍ଣେଲ ୟାମା ମୋଟୋଙ୍କ ସହିତ ବିମାନ ଯୋଗେ ଟୋକିଓ ଅଭିମୁଖେ ଯାତ୍ରା କଲେ । ବାଟରେ ସେ ପେନାଂଗ, ସାଇଗନ, ମାନିଲା, ତାଇପେ ଓ ହାମାମାସ୍କରେ ଗୋଟିଏ

ଗୋଟିଏ ରାତି ରହି ମେ' ୧୬ ତାରିଖରେ ଟୋକିଓଠାରେ ପହଞ୍ଚିଲେ । ସେଠାରେ ତାଙ୍କୁ ଇମ୍ପେରିଆଲ୍‌ଠାରେ ରଖାଯାଇଥିଲା । ପ୍ରଥମେ ସେ ରାହାସବିହାରୀ ବୋଷଙ୍କୁ ସାକ୍ଷାତ କରିଥିଲେ । ବହୁ ସମୟ ନିଜ ମାତୃଭାଷାରେ ସେମାନେ ଆଲୋଚନା କଲେ ଓ ଉଭୟଙ୍କର ଗୋଟିଏ ଆଭିମୁଖ୍ୟ ଥିଲା ଯେ ଭାରତକୁ ଇଂରେଜ କବଳରୁ ମୁକ୍ତ କରିବା ।

ଏଠାରେ ସ୍ମରଣ କରାଇଦିଆଯାଇପାରେ ଯେ, ଭାରତକୁ ବ୍ରିଟିଶ କବଳରୁ ରକ୍ଷା କରିବାପାଇଁ ସେତେବେଳେ ବହୁ ଦେଶପ୍ରେମୀ ଭାରତୀୟ ନିଜର ଜୀବନ ଉତ୍ସର୍ଗ କରିଥିଲେ । ନାନାପ୍ରକାରର ବିଦ୍ରୋହାତ୍ମକ କାର୍ଯ୍ୟକଳାପ ମୁଣ୍ଡ ଟେକିଥିଲା । ଅନେକେ ଅନୁଭବ କରିଥିଲେ, ଭାରତ ଭିତରେ ବ୍ରିଟିଶ ଅଧୀନରେ ରହି ବ୍ରିଟିଶ ସରକାର ବିରୁଦ୍ଧରେ ବିଦ୍ରୋହ କରିବା ସୁବିଧାପ୍ରଦ ନୁହେଁ ଓ ପ୍ରତି ମୁହୂର୍ତ୍ତରେ ବାଧା ବିପଦ, ବଂଧନ ଓ ଅତ୍ୟାଚାରର ଭୟ ରହିଛି । ବିଦେଶକୁ ଚାଲିଯାଇ, ବ୍ରିଟିଶବିରୋଧୀ ଶକ୍ତିମାନଙ୍କ ସହିତ ସହଯୋଗ କରି ମିତ୍ରତାର ବଳୟ ମଧ୍ୟରେ ଶତ୍ରୁସାଧନ କରାଯାଇପାରିଲେ ଲକ୍ଷ୍ୟ ପୂରଣ ହୋଇପାରିବ । ଏହି ଦୃଷ୍ଟିରୁ ଅନେକ ବିଦ୍ରୋହୀ ବିପ୍ଲବୀ ଭାରତୀୟ ସ୍ୱଦେଶ ଛାଡ଼ି ବିଦେଶରେ ଗୁପ୍ତ ରାଜନୈତିକ କାର୍ଯ୍ୟକଳାପ ଦାମ୍ଭିକତାର ସହିତ ଆରମ୍ଭ କରିଥିଲେ । ପୂର୍ବ-ଏସିଆ ଏକ ପ୍ରକାର କାର୍ଯ୍ୟକଳାପର କ୍ରୀଡ଼ାଭୂମି ଥିଲା । ଏହି ସବୁ ବିପ୍ଲବୀ ଦେଶପ୍ରେମୀମାନଙ୍କ ମଧ୍ୟରେ ଅଗ୍ରପୂଜ୍ୟ ଥିଲେ ବାବା ଅମର ସିଂ । ଦୀର୍ଘ କାରାବାସ ପରେ ସେ ଥାଇଲାଣ୍ଡରେ ରହି ଭାରତର ସ୍ୱାଧୀନତାପାଇଁ କାର୍ଯ୍ୟ କରୁଥିଲେ । ଦ୍ୱିତୀୟ ମହାନ୍ ବ୍ୟକ୍ତି ହେଲେ ବାବା ଓସ୍‌ମାନ ଖାଁ । ସେ ଥିଲେ ସାଂଘାଇରେ । ଜ୍ଞାନୀ ପ୍ରୀତମ୍ ସିଂ ଥିଲେ ଜଣେ ଧର୍ମଯାଜକ ଓ ବ୍ୟାଂକକ୍‌ରେ ସେ ରହୁଥିଲେ । ସେ ଥିଲେ ବାବା ଅମର ସିଂଙ୍କର ପ୍ରଧାନ ଅନୁଗାମୀ ଓ



ଜାପାନ ପ୍ରଧାନମନ୍ତ୍ରୀ ଟୋଜୋଙ୍କ ସହ ନେତାଜୀ

ତାଙ୍କଠାରୁ ଭାରତର ସ୍ୱାଧୀନତା ଲାଭପାଇଁ ସେ ଦୀକ୍ଷା ଗ୍ରହଣ କରିଥିଲେ । ପ୍ରୀତମ୍ ସିଂ ଥିଲେ ଜଣେ ଉଦାମ ବ୍ୟକ୍ତି । ନାନା ପ୍ରକାର ଗୁପ୍ତ ସଂଗଠନ ମାଧ୍ୟମରେ ସେ ବ୍ରିଟିଶ ଅଧୀନରେ ଥିବା ଭାରତୀୟ ସେନାବାହିନୀକୁ ଜାତୀୟ ଭାବନାରେ ଉଦ୍‌ବୁଦ୍ଧ କରୁଥିଲେ । ସ୍ୱାମୀ ସତ୍ୟାନନ୍ଦ ପୁରୀ ଥାଇଲାଣ୍ଡରେ 'ଭାରତ-ଥାଇଲଜ୍' ଗଠନ କରିଥିଲେ ଓ ପରେ ଏହା ବଦଳି 'ଭାରତୀୟ ଜାତୀୟ କାଉନସିଲ୍'ରେ ପରିଣତ ହେଲା ।

ଓସମାନ୍ ଖାଁ ଥିଲେ ମହାନ୍ ବିପ୍ଳବୀ । ସେ ସାଂଘାଇଠାରେ ଏକ ଗୁପ୍ତ ସାମରିକ ସଂଗଠନ ସୃଷ୍ଟି କରିଥିଲେ । ତା'ର ପ୍ରଭାବ ଥିଲା ସୁଦୂରପ୍ରସାରୀ । ତାଙ୍କରି ଦ୍ୱାରା ପ୍ରତିଷ୍ଠିତ ଏକ ସମ୍ବାଦପତ୍ର ଯାହାକି ଭାରତର ମୁକ୍ତିସଂଗ୍ରାମପାଇଁ ବିଶ୍ୱ-ଜନମତ ସୃଷ୍ଟି କରୁଥିଲା ଓ ଭାରତୀୟମାନଙ୍କୁ, ଯେ ଯେଉଁ କ୍ଷେତ୍ରରେ ଥାଆନ୍ତୁ ନା କାହିଁକି, ଦେଶାତ୍ମବୋଧରେ ଉଚ୍ଛଳିତ କରୁଥିଲା, ତାହା ପୂର୍ବ-ଏସିଆର ଅଧିକାଂଶ ରାଜ୍ୟରେ ବହୁଳ ପ୍ରଚାରିତ ହୋଇଥିଲା ।

ସ୍ୱାଧୀନ ଭାରତ କେନ୍ଦ୍ରପାଇଁ ଯେଉଁ ଅର୍ଥ ବ୍ୟୟ ହେଉଥିଲା ତାକୁ ସୁଭାଷ ବୋଷ ଜର୍ମାନୀଠାରୁ ଋଣ ଭାବେ ଗ୍ରହଣ କରୁଥିଲେ ଏବଂ ସ୍ୱାଧୀନତା ପାଇବା ପରେ ଭାରତ ସବୁ ଋଣ ପରିଶୋଧ କରିଦେବ ବୋଲି ସେ ଜବାବ ଦେଇଥିଲେ । ନିଜର କଥା ରଖିବା ଉପରେ ଗୁରୁତ୍ୱ ଦେଉଥିବା ସୁଭାଷ ୧୯୪୪ ମସିହାରେ ଜାପାନରେ ଥିବା ସମୟରେ ଜର୍ମାନୀକୁ ଋଣ ପରିଶୋଧର ପ୍ରଥମ କିସ୍ତି ରୂପେ ପଚାଶ ଲକ୍ଷ ୟେନ୍ ପଠାଇଥିଲେ ।

## ଆଜାଦ୍ ହିନ୍ଦ୍ ଫୌଜ

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବ୍ରିଟିଶ୍ ସରକାର ଭାରତର ମୁକ୍ତି ସଂଗ୍ରାମୀଙ୍କ ଉପରେ ଅହରହ ଚଢ଼ାଉ ଜାରି ରଖିଲା । ବ୍ରିଟିଶ୍ ସରକାରର ଅତ୍ୟାଚାରକୁ ଭ୍ରୂକ୍ଷେପ ନକରି ବହୁ ସ୍ୱାଧୀନଚେତା ଭାରତୀୟ ଦକ୍ଷିଣପୂର୍ବ ଏସିଆକୁ ଦଳଦଳ ହୋଇ ପଳାୟନ କରି ସେଠାରେ ଛୋଟ ବ୍ୟବସାୟ ଆରମ୍ଭ କରିଥିଲେ ଏବଂ କେତେକ ସେଠାରେ ବଗିଚାମାନଙ୍କରେ କାର୍ଯ୍ୟ କରୁଥିଲେ । ଜ୍ଞାନୀ ପ୍ରୀତମ ସିଂହ ନାମକ ଜଣେ ସ୍ୱାଧୀନତା ସଂଗ୍ରାମୀ ୨୩ ବର୍ଷ କାଳ ମାଣ୍ଡେଲା ଜେଲରେ ବନ୍ଦୀ ହୋଇ ରହିବା ପରେ ୧୯୪୦ ମସିହାରେ ଜେଲରୁ ଖଲାସ ହୋଇ ବ୍ୟାଙ୍କକ୍‌ଠାରେ ଆଜାଦ୍ ହିନ୍ଦ୍ ସଂଘ ନାମରେ ଏକ ଅନୁଷ୍ଠାନ ଆରମ୍ଭ କରିଥିଲେ । ତାଙ୍କର ଏହି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟରେ ବାବା ଅମର ସିଂହ ନାମକ ଜଣେ ସ୍ୱାଧୀନଚେତା ଭାରତୀୟ ସକ୍ରିୟ ସହଯୋଗ ପ୍ରଦାନ କରିଥିଲେ । ୧୯୩୭ ମସିହାରେ ରାସବିହାରୀ ବୋଷ ଜାପାନରେ ଇଣ୍ଡିଆନ୍ ଇଣ୍ଡିପେଣ୍ଡେନ୍ସ ଲିଗ୍ ନାମକ ସଂସ୍ଥା ଗଠନ କରିଥିଲେ । ରାସବିହାରୀ ବୋଷ ଏବଂ ଜାପାନୀମାନେ ମାଳୟ ଓ ବର୍ମାରେ ଏଇଭଳି ସ୍ୱେଚ୍ଛାସେବୀ ସଂଗଠନମାନ ଗଢ଼ି ଭାରତରୁ

ବ୍ରିଟିଶ ଶାସନର ମୂଳୋତ୍ପାଟନ କରିବାର ଯୋଜନା କରୁଥିଲେ । ଚାରିବର୍ଷ ପରେ ଡିସେମ୍ବର ୧୯୪୧ ମସିହାରେ ଜାପାନୀମାନେ ସିଂଗାପୁର ଅଧିକାର କଲେ । ୩୦ ହଜାର ଜାପାନୀ ସୈନିକ ମାଳୟ ଉପଦ୍ୱୀପରେ ବ୍ରିଟିଶ ସୈନିକମାନଙ୍କ ଉପରେ ଅଚାନକ ଆକ୍ରମଣ କରିଥିଲେ । ବ୍ରିଟିଶମାନେ ସମୁଦ୍ରପଥରୁ ତାଙ୍କ ଉପରେ ଆକ୍ରମଣର ଆଶଙ୍କା କରୁଥିବାରୁ ଜାପାନୀ ସୈନିକମାନଙ୍କୁ ପ୍ରତିରୋଧ କରିପାରିଲେ ନାହିଁ । ୯୦ ହଜାରରୁ ଉର୍ଦ୍ଧ୍ୱ ବ୍ରିଟିଶ୍ ସୈନିକ ଯେଉଁମାନଙ୍କ ମଧ୍ୟରେ ଅର୍ଦ୍ଧାଧିକ ଭାରତୀୟ, ଜାପାନୀ ସେନା ପାଖରେ ଆତ୍ମସମର୍ପଣ କରିଥିଲେ । ପରେ ଏହି ସୈନିକମାନେ ଆଜାଦ୍ ହିନ୍ଦ ଫୌଜର ମୂଳଦୁଆ ସ୍ଥାପନ କରିଥିଲେ ଓ ଭାରତକୁ ବ୍ରିଟିଶ କବଳରୁ ସ୍ୱତନ୍ତ୍ର କରିବା ନିମନ୍ତେ ଏକ ଲଢୁଆ ସେନା ଭାବରେ କାର୍ଯ୍ୟ କରିଥିଲେ । ସେହି ମାସରେ ହୱାଇସ୍ଥିତ ପର୍ଲ ହାର୍‌ବର୍ ବନ୍ଦରଠାରେ ଥିବା ଆମେରିକାର ନୌସେନା କେନ୍ଦ୍ର ଉପରେ ଜାପାନ ବୋମାମାଡ଼ କରିଥିଲା । ଦକ୍ଷିଣ-ପୂର୍ବ ଏସିଆରେ ଥିବା ବ୍ରିଟିଶ୍ ସୈନ୍ୟଙ୍କ ନିକଟରେ ଆମେରିକୀୟ ସହାୟତା ପହଞ୍ଚାଇ ନଦେବା ଜାପାନର ଏହି ବୋମାମାଡ଼ର ମୂଳ ଉଦ୍ଦେଶ୍ୟ ଥିଲା । କାରଣ ଦକ୍ଷିଣ-ପୂର୍ବ ଏସିଆକୁ ବ୍ରିଟିଶ ମୁକ୍ତ କରିବାଲାଗି ଜାପାନ ସେଠାରେ ଥିବା ବ୍ରିଟିଶ ସୈନ୍ୟଙ୍କ ଉପରେ ଆକ୍ରମଣ କରିବାକୁ ଯୋଜନା କରୁଥିଲା । କାରଣ ଏସିଆ କେବଳ ଏସୀୟମାନଙ୍କର- ଏହା ଜାପାନର ଧ୍ୱନି ଥିଲା । ସେ ଯାହା ବି ହେଉ, ଜାପାନ ନିକଟରେ ଆତ୍ମସମର୍ପଣ କରିଥିବା ବ୍ରିଟିଶ ସୈନ୍ୟଙ୍କ ମଧ୍ୟରେ କ୍ୟାପଟେନ୍ ମୋହନ ସିଂହ, କ୍ୟାପଟେନ୍ ମହମ୍ମଦ ଆକ୍ରାମ୍ ଏବଂ ସେମାନଙ୍କର କମାଣ୍ଡିଂ ଅଫିସର ପଞ୍ଜାବ ରେଜିମେଣ୍ଟର ଲେଫ୍ଟନାଣ୍ଟ କର୍ଣ୍ଣେଲ୍ ଫିଜ୍ ପ୍ୟାଟ୍ରିକ୍ ପ୍ରମୁଖ ଅନ୍ତର୍ଭୁକ୍ତ ଥିଲେ ।


ସେନା ସମ୍ମୁଖରେ ନେତାଜୀ

କ୍ୟାପଟେନ୍ ମୋହନ ସିଂହ ସିଆଲକୋଟଠାରେ ଜନ୍ମଗ୍ରହଣ କରିଥିଲେ । ୧୯୩୬ ମସିହାରେ ସେ ପଞ୍ଜାବ ରେଜିମେଣ୍ଟରେ ଯୋଗଦାନ କରି ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ କାର୍ଯ୍ୟରତ ଥିଲେ । ମାର୍ଚ୍ଚ ୧୯୪୧ ମସିହାରେ ସେ ମାଳୟରେ ଅବସ୍ଥାପିତ ହୋଇଥିଲେ । ଜାପାନୀ ଦେଶ ପାଖରେ ଆତ୍ମସମର୍ପଣ କରିବା ପରେ ତାଙ୍କୁ ଜ୍ଞାନୀ ପ୍ରୀତମ୍ ସିଂହ ଓ ଜାପାନୀ ସେନାର ମେଜର ଫୁଜିୱାରା ଭାରତ ସ୍ୱାଧୀନ କରିବାକୁ ସୈନିକମାନଙ୍କୁ ସଂଗଠିତ କରିବାକୁ ପ୍ରବର୍ତ୍ତାଇଥିଲେ । କ୍ୟାପଟେନ୍ ମୋହନ ସିଂହ ଏଥିରେ ସମ୍ମତ ହୋଇ କାର୍ଯ୍ୟ କରିବାରୁ ଆଜାଦ୍ ହିନ୍ଦ୍ ଫୌଜ ଜନ୍ମ ନେଲା । ୧୯୪୨ ମସିହା ପ୍ରଥମ ଭାଗରେ ସେ ମାଳୟରେ ବିକ୍ଷିପ୍ତ ହୋଇ ରହିଥିବା ଯୁଦ୍ଧବନ୍ଦୀ ଶିବିରମାନ ପରିଦର୍ଶନ କରି ଭାରତୀୟ ସୈନ୍ୟମାନଙ୍କୁ ଏକଜୁଟ କଲେ । ସେହି ସମୟରେ ଜେନେରାଲ ୟାମା ସିଟାଙ୍କ ଦ୍ୱାରା ପରିଚାଳିତ ଜାପାନୀ ସୈନ୍ୟବାହିନୀର ଗୋଟିଏ ଡିଭିଜନ୍ ସିଂଗାପୁର ଆଡ଼କୁ ମାଡ଼ିଚାଲିଥିଲେ । ୩୧ ଜାନୁଆରି ୧୯୪୨ରେ ଜୋହୋର (Johure) ଜାପାନୀମାନଙ୍କ କବ୍‌ଜାକୁ ଆସିପାରିଥିଲା । ୟାମା ସିଟାଙ୍କ ସହିତ ଏକ ଆଲୋଚନା କରିବାକୁ ବ୍ରିଟିଶ୍ ପ୍ରସ୍ତାବ ଦେଇଥିଲେ ମଧ୍ୟ ୟାମା ସିଟା ଅତି ଚତୁରତାର ସହିତ ୧୫ ଫେବ୍ରୁଆରି ୧୯୪୨ରେ ନିଜର ସୀମିତ ଅସ୍ତ୍ରାଗାରରେ ବିସ୍ଫୋରଣ ଘଟାଇ ବ୍ରିଟିଶ ନୌବାହିନୀକୁ ଭୟଭୀତ କରାଇଥିଲେ । ବ୍ରିଟିଶ୍ ସୈନ୍ୟବାହିନୀର ମାଳୟରେ ଅବସ୍ଥାପିତ ଜେନେରାଲ ଅଫିସର କମାଣ୍ଡିଂ ଲେଫ୍ଟନାଣ୍ଟ ଜେନେରାଲ ପର୍ସିଭାଲ ତାଙ୍କର ସମସ୍ତ ସୈନ୍ୟଙ୍କ ସହିତ ୧୫ ଫେବ୍ରୁଆରି ୧୯୪୨ ମସିହାରେ ଲେଫ୍ଟନାଣ୍ଟ ଜେନେରାଲ ୟାମା ସିଟାଙ୍କ ନିକଟରେ ଆତ୍ମସମର୍ପଣ କଲେ । ୧୭ ଫେବ୍ରୁଆରି ଦିନ ଭାରତୀୟ ଯୁଦ୍ଧବନ୍ଦୀମାନଙ୍କୁ ଅନ୍ୟମାନଙ୍କଠାରୁ ପୃଥକ୍ କରି ଦିଆଯାଇ ସିଂଗାପୁରର ଓଲ୍ଡ ରେସ୍‌କୋର୍ସ (ବର୍ତ୍ତମାନର ଫାରେର ପାର୍କ)ଠାରେ ଏକତ୍ରିତ କରାଗଲା । ସେମାନେ କ୍ୟାପଟେନ୍ ମୋହନ ସିଂହ ଓ ଜ୍ଞାନୀ ପ୍ରୀତମ ସିଂହଙ୍କର ଭାଷଣ ଶୁଣିଲେ । ୪୫ ହଜାର ଭାରତୀୟ ସୈନିକଙ୍କ ମଧ୍ୟରେ ଉପସ୍ଥିତ ଥିବା ୨୭ ବର୍ଷ ବୟସ୍କ କ୍ୟାପଟେନ୍ ଗୁରବକ୍ସ ସିଂହ ଧିଲନ୍ ମେଜର ଫୁଜିୱାରାଙ୍କ ବକ୍ତବ୍ୟକୁ ଅନୁବାଦ କରି ଶୁଣାଇଥିଲେ । ମେଜର ଫୁଜିୱାରା ଭାରତୀୟ ସୈନିକମାନଙ୍କୁ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗଦେବାକୁ ପରାମର୍ଶ ଦେଇଥିଲେ । "ଇନ୍‌କିଲାବ୍ ଜିନ୍ଦାବାଦ୍" ଧ୍ୱନିରେ ଗଗନ ପବନ ମୁଖରିତ ହୋଇଉଠିଥିଲା । ଭାରତୀୟ ସୈନିକମାନଙ୍କର ମନୋବଳରେ ଘୋର ପରିବର୍ତ୍ତନ ଘଟିଲା । କ୍ୟାପଟେନ୍ ଗୁରବକ୍ସ ସିଂହ ଧିଲନ୍ ଓ ୨୫ ହଜାର ଭାରତୀୟ ସୈନିକ ଆଜାଦ୍ ହିନ୍ଦ୍ ଫୌଜ୍‌ରେ ଯୋଗ ଦେଲେ ।

୧୯୪୨ ମସିହା ସେପ୍ଟେମ୍ବର ମାସରେ ୧୭,୦୦୦ ଭାରତୀୟ ସୈନିକଙ୍କୁ ନେଇ ପ୍ରଥମ ଆଜାଦ୍ ହିନ୍ଦ୍ ଫୌଜ ଗଠିତ ହୋଇଥିଲା । ଅନ୍ୟୁନ ୨୩ ହଜାର ବଳକା ସୈନ୍ୟ



ନେତାଜୀଙ୍କ ସାଲ୍ୟୁଟ୍ ଗ୍ରହଣ

ସ୍ୱେଚ୍ଛାସେବୀ ଭାବରେ ପ୍ରସ୍ତୁତ ହୋଇ ରହିଲେ । ଏହି ସୈନିକମାନେ ଭାରତର ବିଭିନ୍ନ ଭାଷାଭାଷୀ ଅଞ୍ଚଳର ଥିଲେ । ସେମାନଙ୍କ ମଧ୍ୟରେ ଥିଲେ ହିନ୍ଦୁ, ମୁସଲିମ୍, ଶିଖ୍ ଆଦି ବିଭିନ୍ନ ସଂପ୍ରଦାୟ । ସେମାନଙ୍କର ପୋଷାକ ଥିଲା ଖାକି ହାଫ୍ ପ୍ୟାଣ୍ଟ ଓ ଖାକି ସାର୍ଟ । ୧୯୪୨

ମସିହା ଶେଷ ଆଡ଼କୁ କ୍ୟାପଟେନ୍ ମୋହନ ସିଂହ ଭାରତୀୟ ସୈନ୍ୟମାନଙ୍କ ପ୍ରସ୍ତୁତିରେ ସନ୍ତୋଷ ପ୍ରକାଶ କରି ଜାପାନୀମାନଙ୍କୁ ଆଜାଦ୍ ହିନ୍ଦ୍ ଫୌଜକୁ ବର୍ମା ସୀମାନ୍ତକୁ ଅଗ୍ରସର ହେବାକୁ ଅନୁମତି ପ୍ରଦାନ କରିବା ନିମନ୍ତେ ଅନୁରୋଧ କଲେ । କିନ୍ତୁ ଜାପାନୀମାନେ ତାଙ୍କ ଅନୁରୋଧ ରକ୍ଷା କରି ନ ଥିଲେ । କ୍ୟାପଟେନ୍ ମୋହନ ସିଂହ ନିଜେ ଜାପାନୀଙ୍କ ବିନା ଅନୁମତିରେ ଗୋଟିଏ ସୈନ୍ୟଦଳ ବର୍ମା ସୀମାନ୍ତକୁ ପଠାଇଲେ । ତାଙ୍କର ଏହି କାର୍ଯ୍ୟ ଜାପାନୀମାନଙ୍କୁ କ୍ଷୁବ୍ଧ କଲା ଓ ସେମାନେ ୧୨ ଡିସେମ୍ବର ୧୯୪୨ରେ ମୋହନ ସିଂହଙ୍କୁ ବନ୍ଦୀ କଲେ ଓ ବିଭିନ୍ନ ସ୍ଥାନରେ ବନ୍ଦୀ ଭାବରେ ରଖି ଶେଷ ପର୍ଯ୍ୟାୟରେ ସୁମାତ୍ରାରେ ଯୁଦ୍ଧ ଶେଷ ପରେ ତାଙ୍କୁ ମୁକ୍ତି ଦେଲେ ।

ମୋହନ ସିଂହ ବନ୍ଦୀ ହେବା ପରେ ଆଜାଦ୍ ହିନ୍ଦ୍ ଫୌଜକୁ କିଏ ନେତୃତ୍ୱ ଦେବ ସେ ବିଷୟରେ ଆଲୋଚନା ଚାଲିଥିଲା । ମୋହନ ସିଂହ ୧୯୪୧ ମସିହା ଶେଷ ଭାଗରେ ପ୍ରସ୍ତାବ ଦେଇଥିଲେ ଯେ ଭାରତର ସ୍ୱାଧୀନତା ଆନ୍ଦୋଳନର ମୁଖ୍ୟ ପୁରୋଧା ଭାବରେ ଯୋଗଦେବାକୁ ସୁଭାଷ ଚନ୍ଦ୍ର ବୋଷଙ୍କୁ ନିମନ୍ତ୍ରିତ କରାଯାଉ । ଜୁନ୍ ୧୯୪୨ରେ ବ୍ୟାଙ୍କକ୍‌ଠାରେ ଅନୁଷ୍ଠିତ ସମ୍ମିଳନୀରେ ରାସବିହାରୀ ବୋଷଙ୍କ ପ୍ରସ୍ତାବ ସୁଭାଷଙ୍କୁ ଦକ୍ଷିଣ-ପୂର୍ବ ଏସିଆରେ ଭାରତୀୟମାନଙ୍କ ନେତୃତ୍ୱ ନେବାକୁ ନିମନ୍ତ୍ରଣ କରାଯାଉ ବୋଲି ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା । ଜର୍ମାନୀମାନେ ମଧ୍ୟ ସର୍ବତ୍ର ସୁଭାଷଙ୍କ ନେତୃତ୍ୱ ପ୍ରତି ଆସ୍ଥା ସ୍ଥାପନ କରାଯାଉଥିବା ଅନୁଭବ କରି ତାଙ୍କୁ ଜାପାନକୁ ଆଣିବାର ସମସ୍ତ ବନ୍ଦୋବସ୍ତ କରିଦେଇଥିଲେ ।

ମୋହନ ସିଂହଙ୍କ ଗିରଫଦାରି ପରେ କର୍ଣ୍ଣେଲ ଜେ. କେ. ଭୋଁସଲେଙ୍କ ନେତୃତ୍ୱରେ ଏକ ନିର୍ଦ୍ଦେଶାଳୟ ଆଜାଦ୍ ହିନ୍ଦ୍ ଫୌଜ ପରିଚାଳନାପାଇଁ ସ୍ଥାପିତ ହୋଇଥିଲା । ଭାରତ ଯୁବ ତାଲିମ୍ କେନ୍ଦ୍ର କ୍ୱାଲାଲାମ୍ପୁରଠାରେ ପ୍ରତିଷ୍ଠିତ ହୋଇଥିଲା ଏବଂ ଏପ୍ରିଲ ୧୯୪୩ ମସିହା ବେଳକୁ ଏକ ହଜାର ବେସାମରିକ ବ୍ୟକ୍ତିଙ୍କୁ ସାମରିକ ତାଲିମ ପ୍ରଦାନ କରାଯାଇଥିଲା । ହଜାର ହଜାର ସାଧାରଣ ନାଗରିକ ଭାରତୀୟ ସ୍ୱାଧୀନତା ସମିତି (Indian Independence League) ରେ ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ । ୪ ଜୁଲାଇ ୧୯୪୩ ମସିହାରେ କ୍ୟାଥେ ଥିଏଟର ସିଂଗାପୁରଠାରେ ଅନୁଷ୍ଠିତ ଭାରତୀୟମାନଙ୍କର ଏକ ସମ୍ମିଳନୀରେ ସୁଭାଷ ବୋଷ ରାସବିହାରୀ ବୋଷଙ୍କଠାରୁ ଭାରତୀୟ ସ୍ୱାଧୀନତା ସମିତିର ନେତୃତ୍ୱ ନେଲେ । ସେହିଦିନ ସେହି ସଭାରେ ଉପସ୍ଥିତ ଥିବା କର୍ଣ୍ଣେଲ ପ୍ରେମ ସହେଗଲ କହିଛନ୍ତି-"ଚାରିଆଡ଼େ ସୁଭାଷ ଚନ୍ଦ୍ର ବୋଷ ଜିନ୍ଦାବାଦ ଧ୍ୱନି । ସତେ ଯେମିତି ଜଣେ ଈଶ୍ୱର ଅବତରଣ କରିଛନ୍ତି ।

ସେହି ଅନୁଭବ ସମସ୍ତଙ୍କ ମନରେ । ସେହି ବ୍ୟକ୍ତି ଯିଏ ଭାରତୀୟମାନଙ୍କ ପ୍ରାର୍ଥନାର ଉତ୍ତର । ସମବେତ ଭାରତୀୟମାନେ ସୁଭାଷ ଚନ୍ଦ୍ର ବୋଷଙ୍କ ଉପରେ ଗଭୀର ବିଶ୍ୱାସ ସ୍ଥାପନ କରିଥିଲେ ଯେ, ଏହି ବ୍ୟକ୍ତି ତାଙ୍କୁ ସଠିକ୍ ପଥରେ ସଠିକ୍ ନେତୃତ୍ୱ ଦେଇପାରିବ । ଏହି ବ୍ୟକ୍ତିହିଁ ଭାରତରେ ସ୍ୱାଧୀନତା ଆଣିଦେଇପାରିବ ।" ସମସ୍ତ ଭାରତୀୟ ଏକ ସଙ୍ଗେ ଜାତୀୟ ସଂଗୀତ ଗାନ କରି ସାରିବା ପରେ ଜଣେ ଭାରତୀୟ ଗାୟିକା କୁମାରୀ ସରସ୍ୱତୀ ଏକ ନୂତନ ସଂଗୀତ ସୁଭାଷଙ୍କୁ ସମ୍ମାନ ଜଣାଇ ଗାନ କରିଥିଲେ, ଗୀତଟିର ପ୍ରଥମ ପଦ-ସୁଭାଷ ଜୀ, ସୁଭାଷ ଜୀ ଓ୍ୱହ ଜାନ୍ ଏ ହିନ୍ଦ୍ ଆଗୟେ, ଓ୍ୱହ ନାଜ ଜିସ୍ ପେ ହିନ୍ଦ୍ କୋ ଓ୍ୱ ସାମ୍ ଏ ହିନ୍ଦ୍ ଆଗୟେ ।

୧୯୪୩ ମସିହା ଜୁଲାଇ ୫ ତାରିଖରେ ଆଜାଦ୍ ହିନ୍ଦ୍ ଫୌଜ ଗଠନ ହୋଇଥିବା ସମ୍ବାଦ ସମଗ୍ର ବିଶ୍ୱରେ ପ୍ରଚାରିତ ହୋଇ ଚାଞ୍ଚଲ୍ୟ ସୃଷ୍ଟି କଲା । ଜୁଲାଇ ୬ ତାରିଖ ଦିନ ଆଜାଦ୍ ହିନ୍ଦ୍ ଫୌଜ ସୈନ୍ୟମାନଙ୍କ ଏକ ପ୍ୟାରେଡ୍‌ରେ ନେତାଜୀଙ୍କ ସହ ଜାପାନର ପ୍ରଧାନମନ୍ତ୍ରୀ ତୋଜୋ ଅଭିବାଦନ ଗ୍ରହଣ କରି ଜାପାନ ପକ୍ଷରୁ ଆଜାଦ୍ ହିନ୍ଦ୍ ଫୌଜକୁ ପୂର୍ଣ୍ଣ ସମର୍ଥନ ଓ ସହଯୋଗର ଆଶ୍ୱାସନା ଶୁଣାଇଥିଲେ । ୧୯୪୩ ଜୁଲାଇ ୨୦ ତାରିଖରେ ନେତାଜୀ ବର୍ମାର ସ୍ୱାଧୀନତା ଉତ୍ସବରେ ଯୋଗ ଦେବାପାଇଁ ରେଙ୍ଗୁନ୍ ଯାଇଥିଲେ । ସେଠାରେ ବର୍ମାର ନେତୃମଣ୍ଡଳୀ ସହିତ ଆଲୋଚନା କରି ଆଜାଦ୍ ହିନ୍ଦ୍ ଫୌଜ ବର୍ମାକୁ ମୁଖ୍ୟ ଘାଟୀ ରୂପେ ବ୍ୟବହାର କରିବ ବୋଲି ସେମାନଙ୍କଠାରୁ ଦୃଢ଼ ପ୍ରତିଶ୍ରୁତି ପାଇଥିଲେ । ଅଗଷ୍ଟ ୪ ତାରିଖରେ ସେ ଶ୍ୟାମ ଦେଶ (ବର୍ତ୍ତମାନର ଥାଇଲାଣ୍ଡ)ର ରାଜଧାନୀ ବ୍ୟାଙ୍କକ୍‌ରେ ପହଞ୍ଚି ସେଠାକାର ପ୍ରଧାନମନ୍ତ୍ରୀଙ୍କ ସହ ଆଲୋଚନା କରି ଥାଇଲାଣ୍ଡ ଭିତରେ ଆଜାଦ୍ ହିନ୍ଦ୍ ଫୌଜ ନିର୍ବିଘ୍ନରେ ରହିପାରିବ ଓ ଚଳପ୍ରଚଳ କରିବ ବୋଲି ଏକ ଆପୋଷ ରାଜିନାମାରେ ଉପନୀତ ହୋଇଥିଲେ । ପୂର୍ବ-ଏସିଆରେ ସେତେବେଳେ ରହୁଥିବା ୩୦ ଲକ୍ଷ ଭାରତୀୟଙ୍କ ମଧ୍ୟରେ ସୁଭାଷ ଦୃଢ଼ ବିଶ୍ୱାସ ଜନ୍ମାଇ ପାରିଥିଲେ ଯେ ସେମାନଙ୍କ ସହଯୋଗରେ ଭାରତ ସ୍ୱାଧୀନତା ଲାଭ କରିପାରିବ । ଆଜାଦ୍ ହିନ୍ଦ୍ ଫୌଜର ପ୍ରଧାନ ସେନାଧ୍ୟକ୍ଷ ଭାବରେ ତାଙ୍କ ସୈନ୍ୟବାହିନୀକୁ ସେ କହିଥିଲେ-"ସ୍ୱାଧୀନତା କେହି ଦିଏ ନାହିଁ, ଛଡ଼ାଇ ନେବାକୁ ହୁଏ । ସ୍ତୁତି, ବିନତି କିମ୍ବା ଭିକ୍ଷାରେ ସ୍ୱାଧୀନତା ମିଳେ ନାହିଁ ।" ସେ କହିଥିଲେ-"ଅସ୍ତ୍ରଶକ୍ତି ଓ ରକ୍ତଦାନଦ୍ୱାରା ତୁମେମାନେ ସ୍ୱାଧୀନତା ଲାଭ କରିବ । ଭାରତ ସ୍ୱାଧୀନ ହେବା ପରେ ଚିରଦିନ ସ୍ୱାଧୀନତାକୁ ସୁରକ୍ଷିତ କରିବା ଲକ୍ଷ୍ୟ ନେଇ ତୁମେମାନେ ଏକ ସ୍ଥାୟୀ ପ୍ରତିରକ୍ଷା ବାହିନୀ ଗଠନ କରିବ । ସେନାବାହିନୀର ଦାୟିତ୍ୱ ହେବ ମାତୃଭୂମିର ସ୍ୱାଧୀନତା ରକ୍ଷା ।"

## ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାର ଗଠନ

ଜାପାନୀମାନେ ବ୍ରିଟିଶ ହାତରୁ ଆଣ୍ଡାମାନ ଦ୍ୱୀପପୁଞ୍ଜକୁ ଦଖଲକୁ ନେଇଯିବା ପରେ ୧୯୪୩ ମସିହା ଅକ୍ଟୋବର ୨୧ ତାରିଖରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାର (Free Indian Provisional Government) ଗଠନ କଲେ । ଅକ୍ଟୋବର ୨୨ ତାରିଖରେ ଆଜାଦ୍ ହିନ୍ଦ୍ ସେନାର ଝାନ୍ସି ରାଣୀ ରେଜିମେଣ୍ଟ ଗଠିତ ହୋଇଥିଲା । ଡକ୍ଟର ଲକ୍ଷ୍ମୀ ସେହଗଲ ଏହି ମହିଳା ରେଜିମେଣ୍ଟର ମୁଖ୍ୟ ରୂପେ ଦାୟିତ୍ୱ ଗ୍ରହଣ କରିଥିଲେ । ସାରା ବିଶ୍ୱରେ ସେ ପର୍ଯ୍ୟନ୍ତ କେବଳ ନାରୀମାନଙ୍କୁ ନେଇ ଗୋଟିଏ ସୈନ୍ୟଦଳ କେଉଁଠାରେ ଗଠିତ ହୋଇନଥିଲା । ଏହି ମହିଳା ରେଜିମେଣ୍ଟରେ ମାଲୟେସିଆରେ ରବର ଚାଷରେ ନିଯୁକ୍ତ ଥିବା ଶ୍ରମିକମାନଙ୍କର ସ୍ତ୍ରୀ ଓ ଭଉଣୀମାନେ ଯୋଗ ଦେଇଥିଲେ । ପରେ ଅନ୍ୟାନ୍ୟ ମଧ୍ୟବିତ୍ତ ପରିବାରର ସ୍ତ୍ରୀଲୋକମାନେ ମଧ୍ୟ ଝାନ୍ସି ରାଣୀ ରେଜେମେଣ୍ଟରେ ଯୋଗଦେଇ ସେମାନଙ୍କର ଅସୀମ ଦେଶପ୍ରୀତି ପ୍ରଦର୍ଶନ କରିଥିଲେ ।

ପୂର୍ବ-ଏସିଆରେ ସକ୍ରିୟ ଥିବା ଭାରତୀୟ ନେତୃମଣ୍ଡଳୀକୁ ଏକତ୍ରିତ କରି ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାର ଗଠନ ସଂପର୍କରେ ଘୋଷଣା କରି ସେ ନିମ୍ନରେ ପ୍ରଦତ୍ତ ଲିଖିତ ଭାଷଣ ପାଠ କରିଥିଲେ ।

"୧୭୫୭ରେ ବଙ୍ଗଳାରେ ଇଂରେଜଙ୍କ ଦ୍ୱାରା ପ୍ରଥମ ପରାଜୟର ସ୍ୱାଦ ଚାଖିବା ପରେ ଶହେ ବର୍ଷ ଧରି ଭାରତୀୟମାନେ ଇଂରେଜଙ୍କ ବିରୁଦ୍ଧରେ ଅନେକ କଠୋର ସଂଗ୍ରାମ କରିଛନ୍ତି । ଏହି ଶହେ ବର୍ଷର ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଓ ଆତ୍ମୋତ୍ସର୍ଗର ଇତିହାସ ପୃଥିବୀରେ ବିରଳ । ଏହି ଇତିହାସ ପୃଷ୍ଠାରେ ବଙ୍ଗଳାର ସିରାଜ ଉଦ୍ଦୌଲା, ମୋହନ ଲାଲ, ଦକ୍ଷିଣ ଭାରତର ହାଇଦର ଅଲ୍ଲୀ, ଟିପୁ ସୁଲତାନ ଓ ଭେଲୁ ଥାମ୍ପି, ମହାରାଷ୍ଟ୍ରର ଆପା ସାହେବ ଭୋନ୍‌ସଲେ, ପେଶ୍ୱା ବାଜିରାଓ, ଅଭଦ୍‌ର ବେଗମ୍, ପଞ୍ଜାବର ସର୍ଦ୍ଦାର ଅଟାରୀୱାଲା ଏବଂ ରାଣୀ ଲକ୍ଷ୍ମୀବାଈ, ତାନ୍ତିଆଟୋପେ, ମହାରାଜ କନ୍‌ୱାର ସିଂହ ଓ ନାନା ସାହେବଙ୍କ ନାମ ଚିରକାଳ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ । ଇଂରେଜମାନେ ଯେ ସମଗ୍ର ଭାରତବର୍ଷ ପ୍ରତି ଘୋର ବିପଦର କାରଣ ଏକଥା ଦୁର୍ଭାଗ୍ୟବଶତଃ ଆମ ପୂର୍ବପୁରୁଷମାନେ ପ୍ରଥମରୁ ବୁଝି ପାରିନଥିଲେ । ତେଣୁ ସେମାନେ ଏକାଠି ମିଶି ଶତ୍ରୁର ମୁକାବିଲା କଲେନାହିଁ । ଶେଷରେ ଯେତେବେଳେ ଭାରତୀୟ ଲୋକେ ବାସ୍ତବତା ବୁଝିପାରିଲେ, ସେମାନେ ୧୮୫୭ରେ ବାହାଦୁର ଶାହାଙ୍କ ପତାକା ତଳେ ଏକାଠି ହୋଇ ଲଢ଼ିଲେ । ଏହାହିଁ ଥିଲା ସ୍ୱାଧୀନ ଭାରତୀୟଙ୍କର ଶେଷ ସଂଗ୍ରାମ ।"

“୧୮୫୭ ପରେ ଇଂରେଜମାନେ ଭାରତୀୟଙ୍କୁ ବଳପୂର୍ବକ ନିରସ୍ତ୍ର କରିଦେଲେ । ନିର୍ଦ୍ଦୟ ଆଚରଣଦ୍ୱାରା ସେମାନଙ୍କୁ ଭୟଭୀତ କରି ରଖାଗଲା । ସେମାନେ ଇଂରେଜଙ୍କୁ ଯୋଡ଼ହସ୍ତ ହୋଇ ରହିଲେ । ମାତ୍ର ତାହା ଅଳ୍ପ କାଳପାଇଁ । ୧୮୮୫ରେ ଭାରତୀୟ ଜାତୀୟ କଂଗ୍ରେସ ଜନ୍ମଲାଭ କରନ୍ତେ ଦେଶବାସୀଙ୍କ ମନରେ ନୂଆ ଜାଗରଣ ଦେଖାଗଲା । ୧୮୮୫ରୁ ପ୍ରଥମ ମହାଯୁଦ୍ଧ ଶେଷ ହେବା ପର୍ଯ୍ୟନ୍ତ ଭାରତୀୟମାନେ ସେମାନଙ୍କ ହୃତ ସ୍ୱାଧୀନତା ଫେରିପାଇବାପାଇଁ ପ୍ରଚାର, ଆନ୍ଦୋଳନ, ବିଦେଶୀ ଜିନିଷ ବର୍ଜନଠାରୁ ଆରମ୍ଭ କରି ଭଙ୍ଗାରୁଜା, ଆତଙ୍କବାଦ ଓ ଶେଷରେ ସଶସ୍ତ୍ର ବିପ୍ଳବର ଆଶ୍ରୟ ନେଇଛନ୍ତି । କିନ୍ତୁ ସେମାନଙ୍କ ବିଫଳତାର ସ୍ମୃତି ସେମାନଙ୍କୁ ଚେଙ୍କି ଦେଉଥାଏ । ଭାରତୀୟମାନେ ଗୋଟାଏ ନୂତନ ବାଟ ଖୋଜୁଥାନ୍ତି । ଏହି ସମୟରେ ମହାତ୍ମା ଗାନ୍ଧୀ ସେମାନଙ୍କ ସମ୍ମୁଖରେ ଅସହଯୋଗ ଓ ଆଇନ ଅମାନ୍ୟର ଦ୍ୱାର ଖୋଲିଦେଲେ ।”

“ଏତଦ୍ଦ୍ୱାରା ଭାରତବାସୀ କେବଳ ସେମାନଙ୍କର ରାଜନୈତିକ ଚେତନା ଫେରି ପାଇନାହାନ୍ତି, ଏକ ରାଜନୈତିକ ଶକ୍ତିରେ ପରିଣତ ହୋଇଛନ୍ତି । ବର୍ତ୍ତମାନ ସେମାନଙ୍କର ଗୋଟିଏ ସ୍ୱର ଶୁଭୁଛି ଓ ଏକ ମନରେ ସେମାନେ ଗୋଟିଏ ଲକ୍ଷ୍ୟ ଉପରେ ଦୃଷ୍ଟି ରଖିଛନ୍ତି । ୧୯୩୭ରୁ ୧୯୩୯ ଯାଏ ରାଜ୍ୟମାନଙ୍କରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଶାସନ କରିଥିଲା । ଶାସନ ପରିଚାଳନାରେ ଭାରତୀୟମାନଙ୍କର ଯୋଗ୍ୟତା ସେମାନେ ଏତଦ୍ଦ୍ୱାରା ଦେଖାଇ ଦେଇଛନ୍ତି । ବର୍ତ୍ତମାନ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭରୁ ମୁକ୍ତିଲାଭପାଇଁ ଭାରତର ଶେଷ ସଂଗ୍ରାମର ବେଳା ଉପଗତ ।”

“ଭାରତବାସୀଙ୍କ ଉପରେ ନିର୍ମମ ଅତ୍ୟାଚାର କରି, ସେମାନଙ୍କ ଉପରେ ପ୍ରତାରଣାର ଜାଲ ବିଛେଇ, ଇଂରେଜମାନେ ସେମାନଙ୍କ ହୃଦୟରେ ନୈରାଶ୍ୟ ଭରି ଦେଇଛନ୍ତି । ଯେଉଁ ସରକାର ଲୋକଙ୍କୁ ଲୁଣ୍ଠନ କରେ ଓ ଅନାହାରରେ ମରିବାକୁ ଛାଡ଼ିଦିଏ (ବଙ୍ଗଳାର ଦୁର୍ଭିକ୍ଷ) ତାର ଶାସନ କରିବାର ଅଧିକାର ନାହିଁ । ଇଂରେଜମାନେ ଭାରତୀୟଙ୍କ ଶୁଭେଚ୍ଛା ସମ୍ପୂର୍ଣ୍ଣଭାବେ ହରାଇଛନ୍ତି । ଏହି ଅତ୍ୟାଚାରୀଙ୍କ ଶାସନ ଧ୍ୱଂସ କରିବାପାଇଁ ଶେଷ ଅଗ୍ନି ସଂଯୋଗ ଦରକାର ପଡୁଛି । ଭାରତର ମୁକ୍ତିବାହିନୀ ଏଇ ଶେଷ ଅଗ୍ନି ସଂଯୋଗ କରିବ ।”

“ଭାରତପାଇଁ ସ୍ୱାଧୀନତାର ସୂର୍ଯ୍ୟୋଦୟ ସମୟ ଉପଗତ । ସେମାନଙ୍କର ନିଜର ଏକ ଅସ୍ଥାୟୀ ସରକାର ଗଠନ କରିବା ଭାରତବାସୀଙ୍କ କର୍ତ୍ତବ୍ୟ । ସେଇ ସରକାରର ପତାକା ତଳେ ଏକଜୁଟ ହୋଇ ଭାରତ ତା'ର ଶେଷ ସଂଗ୍ରାମ ଲଢ଼ିବ । କିନ୍ତୁ ଭାରତବର୍ଷର ସବୁ ନେତା ବର୍ତ୍ତମାନ ଜେଲରେ । ଲୋକେ ସମ୍ପୂର୍ଣ୍ଣ ନିରସ୍ତ୍ର । ତେଣୁ ଭାରତବର୍ଷରେ ଅସ୍ଥାୟୀ ସରକାର ଗଢ଼ିବା ସମ୍ଭବ ନୁହେଁ । ସୁତରାଂ ପୂର୍ବ ଏସିଆର ଭାରତୀୟ ସ୍ୱାଧୀନତା ସଂଘ ଦେଶରେ ଥିବା ସବୁ ଦେଶପ୍ରେମୀଙ୍କ ସହଯୋଗରେ ଏ କାମ କରିବ । ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାର ଗଢ଼ିବା ଓ ତା'ର ଫୌଜ ସାହାଯ୍ୟରେ ସ୍ୱାଧୀନତାପାଇଁ ଶେଷ ସଂଗ୍ରାମ କରିବା ସଂଘର କାମ ।”



ରାଷ୍ଟ୍ରପତି ସୁଭାଷ

"ଅସ୍ଥାୟୀ ସରକାର ସମସ୍ତ ଭାରତୀୟଙ୍କ ସମର୍ଥନ ଦାବି କରେ । ସବୁ ନାଗରିକଙ୍କୁ ସମାନ ଅଧିକାର ଓ ସମାନ ସୁଯୋଗ ଦେବାକୁ ତଥା ନାଗରିକଙ୍କ ଧାର୍ମିକ ସ୍ୱାଧୀନତା ବଜାୟ ରଖିବାକୁ ଏ ସରକାର ପ୍ରତିଶ୍ରୁତିବଦ୍ଧ ।"

ରବୀନ୍ଦ୍ରନାଥ ଠାକୁରଙ୍କ ରଚିତ ଜନ-ଗଣ-ମନ ଜାତୀୟ ସଂଗୀତର ମାନ୍ୟତା ପାଇଥିଲା । ତ୍ରିରଙ୍ଗା ପତାକା ମଧ୍ୟରେ ଚରଖା ଥାଇ ଏହା ଜାତୀୟ ପତାକା ରୂପେ ବ୍ୟବହୃତ ହେଲା । ତିନୋଟି ଉର୍ଦ୍ଦୁ ଶବ୍ଦ ଇତ୍‌ମଦ୍ (ବିଶ୍ୱାସ), ଇତେଫାକ୍ (ଏକତା) ଓ କୁର୍ବାନୀ (ତ୍ୟାଗ) ଆଜାଦ୍ ହିନ୍ଦ୍ ସରକାରର ନୀତିବାକ୍ୟ ରୂପେ ଗୃହୀତ ହୋଇଥିଲା । ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାରର ମୁଖ୍ୟ କାର୍ଯ୍ୟାଳୟ ସିଂଗାପୁରଠାରେ ସ୍ଥାପିତ ହେଲା । ଅକ୍ଟୋବର ୨୩ ତାରିଖରେ ପ୍ରଥମେ ଜାପାନ ସରକାର ଏହାକୁ ଆନୁଷ୍ଠାନିକ ସ୍ୱୀକୃତି ପ୍ରଦାନ କଲେ । ଏହା ପରେ ପରେ ଜର୍ମାନୀ, ଇଟାଲୀ, କ୍ରୋଏସିଆ, ସ୍ପେନ୍, ଆୟରଲାଣ୍ଡ, ମାଞ୍ଚୁକୋ, ନାନ୍‌କିଙ୍ଗ୍, କୋରିଆ, ଫିଲିପାଇନ୍ସ, ଇଣ୍ଡୋନେସିଆ, ମାଳୟ, ଥାଇଲାଣ୍ଡ ଓ ବର୍ମା ପ୍ରଭୃତି ଦେଶଗୁଡ଼ିକ ଏହି ସରକାରକୁ ସ୍ୱୀକୃତି ପ୍ରଦାନ ଘୋଷଣା କଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସର୍ବସମ୍ମତିକ୍ରମେ ଏହି ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାରର ସଭାପତି ରୂପେ ଦାୟିତ୍ୱ ଗ୍ରହଣ କଲେ । ଅକ୍ଟୋବର ୨୪ ତାରିଖରେ ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାର ଯୁକ୍ତରାଷ୍ଟ୍ର ଆମେରିକା ଓ ବ୍ରିଟେନ୍ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ । ଜାପାନ ସରକାର ତାଙ୍କଦ୍ୱାରା ଅଧିକୃତ ହୋଇଥିବା ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜକୁ ୧୯୪୩ ମସିହା ଡିସେମ୍ବର ମାସରେ ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାରଙ୍କୁ ହସ୍ତାନ୍ତର କରିଥିଲେ । ସୁଭାଷ ଚନ୍ଦ୍ର ବୋଷ ଏହି ଦ୍ୱୀପ ଦୁଇଟିକୁ ପରିଦର୍ଶନ କରି ଆଣ୍ଡାମାନକୁ ଶହୀଦ ଓ ନିକୋବରକୁ ସ୍ୱରାଜ ନାମରେ ନାମିତ କରିଥିଲେ ଏବଂ ଜଣେ ଡାକ୍ତର କର୍ଣ୍ଣେଲ ଲୋକନାଥନ୍‌ଙ୍କୁ ଏହି ଦ୍ୱୀପର ଚିଫ୍ କମିଶନର୍ ଭାବରେ ନିଯୁକ୍ତି ଦେଇଥିଲେ । ସୁଭାଷ ବୋଷ ପୋର୍ଟବ୍ଲେୟାରଠାରେ ଅବସ୍ଥିତ ସେଲୁଲାର ଜେଲକୁ ପରିଦର୍ଶନ କରିଥିଲେ । ସେଠାରେ ବ୍ରିଟିଶ ସରକାର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବନ୍ଦୀକରି ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିଲେ । ନେତାଜୀ ନାନ୍‌କିଙ୍ଗ୍, ମାନିଲା ଓ ଜାଭା ଇତ୍ୟାଦି ପରିଭ୍ରମଣ କରି ସେଠାରେ ରାଷ୍ଟ୍ରନେତା ଭାବେ ସମ୍ବର୍ଦ୍ଧିତ ହୋଇଥିଲେ । ପରେ ସେ ଜାଭା, ବୋର୍ଣ୍ଣିଓ ଓ ସୁମାତ୍ରା ଗସ୍ତ କରି ସେଠାରେ ପ୍ରବାସୀ ଭାରତୀୟମାନଙ୍କୁ ଭାଷଣ ଦେଇ ସେମାନଙ୍କର ସମର୍ଥନ ପାଇବାକୁ ସକ୍ଷମ ହୋଇଥିଲେ ।

୧୯୪୪ ମସିହା ଜାନୁଆରି ୭ ତାରିଖରେ ଆଜାଦ୍ ହିନ୍ଦ୍ ସରକାରର ମୁଖ୍ୟ କାର୍ଯ୍ୟାଳୟ ସିଙ୍ଗାପୁରରୁ ବର୍ମାର ରାଜଧାନୀ ରେଙ୍ଗୁନକୁ ସ୍ଥାନାନ୍ତରିତ ହୋଇଥିଲା । ବ୍ରିଟିଶ ସେନା ଜାପାନ ନିକଟରୁ ହାରିଯାଇ ପଳାୟନ କଲାବେଳେ କିମ୍ବା ଆତ୍ମସମର୍ପଣ କଲାବେଳେ ସେମାନଙ୍କର ଯେଉଁସବୁ ଯୁଦ୍ଧ ସରଂଜାମ ଯଥା ସୈନ୍ୟମାନଙ୍କୁ ବୋହିବା ପାଇଁ ଗାଡ଼ି, ଟ୍ୟାଂକ୍, କମାଣ, ମେସିନଗନ୍, ବନ୍ଧୁକ ପ୍ରଭୃତି ଯାହା ଜବତ୍ ହୋଇଥିଲା ତାହାର ବ୍ୟବହାର ଜାପାନର ସୈନିକମାନେ ଜାଣିନଥିଲେ । ତେଣୁ ସେଗୁଡ଼ିକୁ ଅଳ୍ପ ମୂଲ୍ୟରେ ନେତାଜୀ

ଜାପାନଠାରୁ କ୍ରୟକରି ନିଜ ସୈନ୍ୟବାହିନୀକୁ ଯୋଗାଇ ଦେଇଥିଲେ । ଯୁଦ୍ଧ କୌଶଳ ଶିକ୍ଷା ଦେବାପାଇଁ ନ'ଟି ମିଲିଟାରୀ ତାଲିମ୍ କେନ୍ଦ୍ର ପ୍ରତିଷ୍ଠା କରାଯାଇଥିଲା । ସେଠାରେ ସମସ୍ତ ଶିକ୍ଷାଦାନ, ସେନାବାହିନୀର ଆଦେଶ ନିର୍ଦ୍ଦେଶ ହିନ୍ଦୀ ଭାଷାରେ ଦିଆଯାଉଥିଲା । ଇଂରେଜମାନଙ୍କ ଦ୍ୱାରା ତାଲିମପ୍ରାପ୍ତ ଭାରତୀୟ ସୈନିକମାନେ ଯେଉଁମାନେ କି ଜାପାନୀମାନଙ୍କ ନିକଟରେ ଆତ୍ମସମର୍ପଣ କରିବାକୁ ବାଧ ହୋଇଥିଲେ, ସେମାନଙ୍କୁ ନେଇ ପ୍ରଥମେ ଆଜାଦ୍ ହିନ୍ଦ୍ ଫୌଜ ଗଠନ କରାଯାଇଥିଲା । ଆଜାଦ୍ ହିନ୍ଦ୍ ଫୌଜରେ ପ୍ରାୟ ୬୦,୦୦୦ ସୈନ୍ୟ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ ପ୍ରାୟ ୨୦,୦୦୦ ବେସାମରିକ ବ୍ୟକ୍ତି ନୂତନ ଭାବରେ ତାଲିମ ପାଇ ଆଜାଦ୍ ହିନ୍ଦ୍ ଫୌଜରେ ସାମିଲ ହୋଇଥିଲେ । ଆଜାଦ୍ ହିନ୍ଦ୍ ଫୌଜରେ ପଦାତିକ ବାହିନୀ, ଭାରୀ କମାଣ ବାହିନୀ, ଇଂଜିନିୟରିଂ ବାହିନୀ, ସିଗନାଲ ବାହିନୀ, ଚିକିତ୍ସା ବାହିନୀ ପ୍ରଭୃତି ବିଭିନ୍ନ ବିଭାଗ ଥିଲା । ସବୁ ବିଭାଗଗୁଡ଼ିକୁ ନେତାଜୀଙ୍କ ପ୍ରତ୍ୟକ୍ଷ ନିର୍ଦ୍ଦେଶରେ ସୁସଂଗଠିତ କରାଯାଇଥିଲା । ନାରୀବାହିନୀ ଝାନ୍ସି ରାଣୀ ବ୍ରିଗେଡ଼ରେ ୧୨ ଶହରୁ ଊର୍ଦ୍ଧ୍ୱ ମହିଳା ସୈନିକ ଥିଲେ । ଏମାନେ ମୁଖ୍ୟତଃ ଆହତ ସୈନିକଙ୍କ ଚିକିତ୍ସା କରିବା ସଂଗେ ସଂଗେ ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରଚାର କାର୍ଯ୍ୟ ଚଳାଉଥିଲେ । କ୍ୟାପଟେନ୍ ଡାକ୍ତର ଲକ୍ଷ୍ମୀ ସେହଗଲ ଏହି ବ୍ରିଗେଡ଼ର ଅଧିନାୟିକା ଥିଲେ ।

୧୯୪୪ ମସିହା ଜାନୁଆରି ୨୭ ତାରିଖ ଦିନ ଜାପାନ ସୈନ୍ୟବାହିନୀର ଜେନେରାଲ କାତାକୁରା ଓ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ମଧ୍ୟରେ ଏକ ଆଲୋଚନାରେ ଆଜାଦ୍ ହିନ୍ଦ୍ ଫୌଜ ଭାରତ ଆକ୍ରମଣ କରିବ ଓ ଜାପାନ ସୈନିକମାନେ ଆଜାଦ୍ ହିନ୍ଦ୍ ଫୌଜକୁ ସହାୟତା ଯୋଗାଇବେ ବୋଲି ସ୍ଥିର ହେଲା । ଜାପାନୀ ସୈନିକମାନେ ନେତାଜୀଙ୍କ ଆଦେଶରେ କାର୍ଯ୍ୟ କରିବା ସ୍ଥିରୀକୃତ ହୋଇଥିଲା । ଉଭୟପକ୍ଷର ସେନାବାହିନୀଦ୍ୱାରା ଭାରତର ଯେଉଁ ଅଂଶ ଇଂରେଜ ଅକ୍ତିଆରରୁ ମୁକ୍ତ ହେବ, ସେଠାରେ ଆଜାଦ୍ ହିନ୍ଦ୍ ସରକାରଙ୍କର ଶାସନ ପ୍ରତିଷ୍ଠା ହେବ ।

୧୯୪୪ ଜାନୁଆରି ୨୮ରେ ରେଙ୍ଗୁନ୍ ସହରର କୋଚିନ ସ୍କୁଲଠାରେ ଆଜାଦ୍ ହିନ୍ଦ୍ ଫୌଜର ୫୦,୦୦୦ ସୈନିକ ଏକତ୍ରିତ ହୋଇଥିଲେ । ଏହି ସୈନ୍ୟବାହିନୀରେ ହିନ୍ଦୁ, ମୁସଲମାନ, ଶିଖ୍, ଖ୍ରୀଷ୍ଟିଆନ ସବୁ ଧର୍ମର ଓ ସବୁ ଅଞ୍ଚଳର ଲୋକ ଯୋଗ ଦେଇଥିଲେ ଏବଂ ସେମାନେ ଏକ ହୋଇ ନେତାଜୀଙ୍କ ନେତୃତ୍ୱରେ ଇଂରେଜ କବଳରୁ ଭାରତକୁ ମୁକ୍ତ କରିପାରିବେ ବୋଲି ଆତ୍ମବିଶ୍ୱାସରେ କାର୍ଯ୍ୟ କରୁଥିଲେ । ସେନାବାହିନୀରେ ପ୍ରତ୍ୟେକ ପରସ୍ପରକୁ 'ଜୟହିନ୍ଦ୍' ସମ୍ବୋଧନ କରି ଅଭିବାଦନ ଜଣାଉଥିଲେ ।

ନେତାଜୀ ତାଙ୍କ ସେନାବାହିନୀରେ ପାଞ୍ଚ ହଜାରରୁ ଅଧିକ ଓଡ଼ିଆଙ୍କୁ ସ୍ଥାନ ଦେଇ ଉପଯୁକ୍ତ ତାଲିମ ଦେବା ସଙ୍ଗେ ସଙ୍ଗେ ସେନା ବାହିନୀର ବିଭିନ୍ନ ଜରୁରୀ ଓ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ନିଯୁକ୍ତି ଦେଇଥିଲେ । ନିଜର ଦେହରକ୍ଷୀ ଭାବେ ପଞ୍ଚାନନ ଜେନାଙ୍କୁ ନେତାଜୀ ନିଯୁକ୍ତି ଦେଇଥିଲେ । ନେତାଜୀ ଚାଲିଯିବା ପରେ ଜେନା ବ୍ରିଟିଶଙ୍କ ଦ୍ୱାରା ବନ୍ଦୀ ହୋଇ ରେଙ୍ଗୁନ୍ ସେଣ୍ଟ୍ରାଲ ଜେଲରେ ନଅ ମାସ କଟାଇଥିଲେ । ଅନ୍ୟମାନଙ୍କ ଭିତରେ ବନମାଳୀ ସେଠୀ ମଧ୍ୟ ଜଣେ ଦେହରକ୍ଷୀ ଥିଲେ । ସେ ମଧ୍ୟ ବନ୍ଦୀହୋଇ ସେହି ଜେଲରେ ଆଠ ମାସ କଟାଇଥିଲେ ।

ବହୁ ବିଶ୍ୱସ୍ତ ଓଡ଼ିଆଙ୍କୁ ଉପଯୁକ୍ତ ତାଲିମ ଦିଆଯାଇ ଅତି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଫିଲ୍ମ ପ୍ରୋପାଗାଣ୍ଡାପାଇଁ ଯୁଦ୍ଧ କ୍ଷେତ୍ରରେ ନିଯୁକ୍ତ କରାଯାଇଥିଲା । ସେମାନଙ୍କ ଭିତରୁ ଡାକ୍ତର ବୀର କିଶୋର ଭୂୟାଁ ପୂର୍ବରୁ ଜଣେ ଗାନ୍ଧିବାଦୀ ସ୍ୱାଧୀନତା ସଂଗ୍ରାମୀ ଥାଇ ଭାରତରେ ବହୁବାର କାରାରୁଦ୍ଧ ହୋଇଥିଲେ ଓ ନିର୍ଯ୍ୟାତନା ଭୋଗ କରିଥିଲେ । ସେ ବର୍ମାରେ ଏକ କରପୋରେସନର ଜଣେ ଅଫିସର ରୂପେ ଯୋଗ ଦେବା ସଙ୍ଗେ ସଙ୍ଗେ ନିଜର ଚିକିତ୍ସା ବ୍ୟବସାୟ ମଧ୍ୟ କରୁଥିଲେ ।

ଜାପାନର ବର୍ମା ଦଖଲ ପରେ ହିନ୍ଦ୍ ସଙ୍ଘ ଗଢ଼ା ହେବାରେ ସେଥିରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଆଜାଦ୍ ହିନ୍ଦ୍ ଫୌଜରେ ସେ ଫିଲ୍ମ ପ୍ରୋପାଗଣ୍ଡା ଅଫିସର ରୂପେ ଯୋଗ ଦେଇ ବିଶ୍ୱସ୍ତ ଭାବରେ କାର୍ଯ୍ୟ କରୁଥିଲେ । ଯୁଦ୍ଧ ଶେଷରେ ରେଙ୍ଗୁନ୍ ସେଣ୍ଟ୍ରାଲ ଜେଲରେ ୧୯୪୬ ପର୍ଯ୍ୟନ୍ତ ବନ୍ଦୀ ହୋଇ ରହିଥିଲେ ।

କଳାକାର କୃଷ୍ଣଚନ୍ଦ୍ର ତ୍ରିପାଠୀ ବର୍ମାରେ ଓଡ଼ିଆ ରାସ ସମିତି ଗଠନ କରି ଓଡ଼ିଆ କଳା ସଂସ୍କୃତିର ପ୍ରଚାର କରୁଥିବା ସମୟରେ ଆଜାଦ୍ ହିନ୍ଦ୍ ସରକାରଙ୍କର ପ୍ରଚାର ଓ ଲୋକ ସଂପର୍କ ଅଫିସର ଭାବେ ନିଯୁକ୍ତି ପାଇଥିଲେ । ବ୍ରିଟିଶ ସେନା ହସ୍ତରେ ବନ୍ଦୀ ହୋଇ ସେ ରେଙ୍ଗୁନ୍ ସେଣ୍ଟ୍ରାଲ ଜେଲରେ ଆଠ ମାସ ବନ୍ଦୀ ହୋଇ ରହିଥିଲେ । ପୀତବାସ ପାଣିଗ୍ରାହୀ ମଧ୍ୟ ପ୍ରଚାର ବିଭାଗର ଏକ ଅଫିସର ଥିଲେ । ସେ ମଧ୍ୟ ଆଠ ମାସ ରେଙ୍ଗୁନ ସେଣ୍ଟ୍ରାଲ ଜେଲରେ ବନ୍ଦୀ ହୋଇ ରହିଥିଲେ । କନ୍ଧ ଦଳେଇ ଓ ମୁକୁନ୍ଦ ଗୌଡ଼ ମୟାଙ୍ଗ କ୍ୟାମ୍ପରେ ରହି ପ୍ରଚାର କାର୍ଯ୍ୟ ଚଳାଇଥିଲେ । ସେ ମଧ୍ୟ ପରେ ରେଙ୍ଗୁନ୍ ଜେଲରେ ଆଠ ମାସ କଟାଇଥିଲେ । କୃଷ୍ଣଚନ୍ଦ୍ର ପ୍ରଧାନ, ରଘୁନାଥ ସାହୁ, ଗଣେଶ ରଥ ଓ ଆନନ୍ଦ ସାହୁ ପ୍ରଭୃତି ବିଭିନ୍ନ କ୍ୟାମ୍ପରେ ରହି ପ୍ରୋପାଗଣ୍ଡା କାର୍ଯ୍ୟ କରୁଥିଲେ । ସେମାନେ ସମସ୍ତେ ପରେ ରେଙ୍ଗୁନ୍ ଜେଲରେ ଆଠ ନଅ ମାସ କାରାଦଣ୍ଡ ଭୋଗ କରିଥିଲେ ।

ଉତ୍ସବ ପ୍ରଧାନ ଯୋଗାଣ ଅଫିସର ଥିବା ସଙ୍ଗେ ସଙ୍ଗେ ଫିଲ୍ମ ପ୍ରୋପାଗଣ୍ଡା କାର୍ଯ୍ୟ କରୁଥିଲେ । ସେ ମଧ୍ୟ ପରେ ରେଙ୍ଗୁନ୍ ସେଣ୍ଟ୍ରାଲ ଜେଲରେ ୭ ମାସ କାରାବରଣ କରିଥିଲେ ।

ଯୋଗାଣ ସଂସ୍ଥାର ସୈନିକ-ଶ୍ରୀବତ୍ସ ମହାକୁଡ଼, ହାଡ଼ିବନ୍ଧୁ ମହାପାତ୍ର, କାଳୁପାଣି ପ୍ରଧାନ, ମୋହନ ସାହୁ ପ୍ରଭୃତି ସୈନିକ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ଯୁଦ୍ଧ କ୍ଷେତ୍ରରେ ଯୋଗାଣପାଇଁ ଯୋଗାଯୋଗ ରକ୍ଷା କରୁଥିଲେ । ସେମାନେ ଯୁଦ୍ଧ ଶେଷରେ ବ୍ରିଟିଶ ସୈନ୍ୟମାନଙ୍କ ଦ୍ୱାରା ବନ୍ଦୀ ହୋଇ ରେଙ୍ଗୁନ ସେଣ୍ଟ୍ରାଲ ଜେଲରେ ଆଠ ମାସ ଲେଖାଏଁ କାରାଦଣ୍ଡ ଭୋଗ କରିଥିଲେ ।

ଗରିଲା ବାହିନୀ: ଗରିଲା ବାହିନୀରେ ଯୁଦ୍ଧ କ୍ଷେତ୍ରରେ ଆଗୁଆ ରହି ଶ୍ରୀ ହରି ଚୌଧୁରୀ, ଆନନ୍ଦ ପ୍ରଧାନ ଓ ୪ ନମ୍ବର ଗରିଲା ସିପାହୀ ମୁରଲୀ ନାୟକ ପ୍ରଭୃତି କାର୍ଯ୍ୟ କରିବା ସମୟରେ ବ୍ରିଟିଶ ସେନାଦ୍ୱାରା ବନ୍ଦୀ ହୋଇ ଅବିଭକ୍ତ ଭାରତର ଝିକର ଗାଛିଆ, ନୀଳଗଞ୍ଜ ପ୍ରଭୃତି ମିଲିଟାରୀ କ୍ୟାମ୍ପରେ ନଅ ମାସରୁ ଅଧିକ ନଜର ବନ୍ଦୀ ହୋଇ ରହିଥିଲେ ।

ବୀର ମିଶ୍ର ହୋଟେଲ ବ୍ୟବସାୟପାଇଁ ବର୍ମା ଆସି ଆଜାଦ୍ ହିନ୍ଦ୍ ଫୌଜରେ ଯୋଗ ଦେବା ପରେ ସେ ଗୋଇନ୍ଦା ସଂସ୍ଥାରେ ଯୋଗ ଦେଇ ଯୁଦ୍ଧ କ୍ଷେତ୍ରରେ ସି.ଆଇ.ଡି. କାର୍ଯ୍ୟ କରୁଥିଲେ । ପରେ ବନ୍ଦୀ ହୋଇ ରେଙ୍ଗୁନ୍ ସେଣ୍ଟ୍ରାଲ ଜେଲରେ ୧୦ ମାସ କାରାଦଣ୍ଡ ଭୋଗ କରିଥିଲେ ।

ସେବା ଦଳ: ଯୁଦ୍ଧ କ୍ଷେତ୍ରରେ ବହୁ ଓଡ଼ିଆ ସୈନିକ ବୀରତ୍ୱର ସହିତ କାର୍ଯ୍ୟ କରିଥିଲେ । ମେଡ଼ିକାଲ ଗ୍ରୁପରେ ଥିବା ନରସିଂହ ସାହୁ ବ୍ରିଟିଶ୍ ସେନାଦ୍ୱାରା ବନ୍ଦୀ ହୋଇ ଝିକର ଗାଛିଆ ଓ ନୀଳଗଞ୍ଜ ବ୍ରିଟିଶ୍ ମିଲିଟାରୀ କ୍ୟାମ୍ପରେ ନଅ ମାସ ବନ୍ଦୀ ହୋଇ ରହିଥିଲେ । ସେବା (ନର୍ସିଙ୍ଗ) ସିପାହି ରୂପେ କାର୍ଯ୍ୟ କରୁଥିବା ଲକ୍ଷ୍ମଣ ରଥ ବ୍ରିଟିଶ୍ ସେନାଦ୍ୱାରା ବନ୍ଦୀ ହୋଇ ମିଜାଉଁ କାରାଗାରରେ ଦୁଇ ମାସ ଓ ରେଙ୍ଗୁନ୍ ସେଣ୍ଟ୍ରାଲ ଜେଲରେ ନଅ ମାସ ବନ୍ଦୀ ରହିଥିଲେ । ନର୍ସିଙ୍ଗ ସିପାହି କେଶବ ପ୍ରଧାନ, କାର୍ତ୍ତିକ ନାୟକ, ୧ ନଂ ବେଶ୍ ହସପିଟାଲରେ କନ୍ଧ, ସାହୁ ପ୍ରଭୃତି ଯୁଦ୍ଧ କ୍ଷେତ୍ରରେ ଆହତ ସୈନିକଙ୍କ ସେବା କରୁଥିଲେ । ପରେ ସେମାନେ ବନ୍ଦୀ ହୋଇ ଆଠ ମାସ ଲେଖାଏଁ ବନ୍ଦୀ ଜୀବନ ଭୋଗ କରିଥିଲେ । ଗୋବର୍ଦ୍ଧନ ପ୍ରଧାନ ମଧ୍ୟ ସମ୍ମୁଖ ଯୁଦ୍ଧ କ୍ଷେତ୍ରରେ ନର୍ସିଙ୍ଗ କାର୍ଯ୍ୟ କରୁଥିଲେ । ପରେ ସେ ରେଙ୍ଗୁନ ଜେଲରେ ନଅ ମାସ ବନ୍ଦୀ ହୋଇ ରହିଥିଲେ ।

ଭାଷାନ୍ତରକାରୀ ସୈନିକ: ଯୁଦ୍ଧ କ୍ଷେତ୍ରରେ ଜାପାନୀ ଭାଷାକୁ ଭାଷାନ୍ତର କରି ଜାପାନୀ ସୈନ୍ୟମାନଙ୍କ ସଙ୍ଗେ ଯୋଗାଯୋଗ ରଖିବାପାଇଁ, ଗୋବିନ୍ଦ ରାଓ ପୃଷ୍ଟି କାର୍ଯ୍ୟକରି ପରେ ବ୍ୟାଙ୍କକ୍ ଜେଲରେ ୪ ମାସ ଓ ରେଙ୍ଗୁନ ସେଣ୍ଟ୍ରାଲ ଜେଲରେ ୩ ମାସ ବନ୍ଦୀ ହୋଇ ରହିଥିଲେ । ଆନନ୍ଦ ବିଶ୍ୱାସ ବର୍ମା ଭାରତ ସୀମାରେ ଭାଷାନ୍ତର କାର୍ଯ୍ୟରେ ଲିପ୍ତ ଥିବାବେଳେ ବନ୍ଦୀ ହୋଇଥିଲେ । ୫ ନମ୍ବର ଗରିଲା ସିପାହୀ ଅର୍ଜୁନ ଗୌଡ଼ ନିଜକାର୍ଯ୍ୟ ସହିତ ଭାଷାନ୍ତର କରୁଥିବା ବେଳେ ବନ୍ଦୀ ହୋଇ ଭାରତର ଝିକର ଗାଛିଆ ମିଲିଟାରୀ କ୍ୟାମ୍ପରେ ନଜର ବନ୍ଦୀ ରୂପେ ରହିଥିଲେ ।



**ସୁଭାଷଙ୍କ ମନ୍ତ୍ରିମଣ୍ଡଳ**

ସର୍ବସ୍ୱଦାନୀ ସୈନିକ: ପରମ ବୈଷ୍ଣବ ଶ୍ରୀ ବୃନ୍ଦାବନ ପଣ୍ଡା ଓଡ଼ିଶାରୁ ଯାଇ ବର୍ମାରେ ମଠବାଡ଼ି କରି ତାଙ୍କ ଶିଷ୍ୟଙ୍କ ଗହଣରେ ଧାର୍ମିକ ଜୀବନ ଯାପନ କରୁଥିଲେ । ସେ ନେତାଜୀଙ୍କ ଆହ୍ୱାନରେ ନିଜର ସମସ୍ତ ମଠବାଡ଼ି ଓ ସମ୍ପତ୍ତି ଆଜାଦ୍ ସରକାରଙ୍କୁ ଦାନ କରି ନିଜର ପ୍ରାଣୋତ୍ସର୍ଗପାଇଁ ଯୁଦ୍ଧରେ ତାଲିମ ପାଇ ଭାରତ ସୀମାରେ ଯୁଦ୍ଧରେ ରତ ଥିବା ସମୟରେ ବ୍ରିଟିଶଙ୍କ ଦ୍ୱାରା ବନ୍ଦୀ ହୋଇ ଝିକର ଗାଛିଆ ଓ ନୀଳଗଞ୍ଜ ମିଲିଟାରୀ କ୍ୟାମ୍ପରେ ବନ୍ଦୀ ହୋଇ ରହିଥିଲେ ।

ଆଜାଦ୍ ହିନ୍ଦ୍ ଫୌଜର ଭାରତ ଆକ୍ରମଣରେ ନେତୃତ୍ୱ ନେଇଥିବା ସିପାହି- ଉତ୍ସବାନନ୍ଦ ପ୍ରଧାନ ସ୍ପେସାଲ ଗ୍ରୁପ୍ ଲିଡର ଭାବେ ସୈନ୍ୟ ଚାଳନାର ଦାୟିତ୍ୱ ନେଇଥିଲେ । ସେ ପରେ ରେଙ୍ଗୁନ ସେଣ୍ଟ୍ରାଲ ଜେଲରେ ଆଠ ମାସ କାରାଦଣ୍ଡ ଭୋଗ କରିଥିଲେ । କୃଷ୍ଣ ଜେନା ଗାନ୍ଧୀ ବ୍ରିଗେଡ଼ରେ ଥାଇ ଭାରତ ଆକ୍ରମଣ କରିଥିଲେ । ସେ ବ୍ରିଟିଶ୍ ସେନାଙ୍କ ଦ୍ୱାରା ବନ୍ଦୀ ହୋଇ ଅବିଭକ୍ତ ଭାରତର ଚର୍ଚ୍ଚ ଗ୍ରାମ ଓ ଝିକର ଗାଛିଆ ମିଲିଟାରୀ କ୍ୟାମ୍ପରେ ଆଠ ମାସ ନଜରବନ୍ଦୀ ହୋଇ ରହିଥିଲେ ।

ଆଗୁଆ ପୋପା ପାହାଡ଼ ଯୁଦ୍ଧ କ୍ଷେତ୍ରରେ ରହି ଯୁଦ୍ଧ କରୁଥିବା ଶ୍ରୀ ନକୁଳ ସେଠି, ଶ୍ରୀ ହରିବନ୍ଧୁ କରଣ ପ୍ରଭୃତି ବ୍ରିଟିଶ୍ ସେନା ଦ୍ୱାରା ବନ୍ଦୀ ହୋଇ ଝିକର ଗାଛିଆ ମିଲିଟାରୀ କ୍ୟାମ୍ପରେ ବନ୍ଦୀ ହୋଇ ରହିଥିଲେ । ସେଠାରେ ଇଞ୍ଜିନିଅରିଙ୍ଗ ସଂସ୍ଥାରେ କାର୍ଯ୍ୟରତ ହୀନ

ବେହେରା ଆହତ ହୋଇ ଚିକିତ୍ସିତ ହେଉଥିବା ବେଳେ ବନ୍ଦୀ ହୋଇ ରେଙ୍ଗୁନ ଜେଲରେ ୧୦ ମାସ ବନ୍ଦୀ ହୋଇ ରହିଥିଲେ । ସେହି ପୋପା ଯୁଦ୍ଧରୁ ବନ୍ଦୀ ହୋଇ ବାଉରୀବନ୍ଧୁ ପାଣିଗ୍ରାହୀ ୧୧ ମାସ, ଆନନ୍ଦ ସେଠୀ ୮ ମାସ, ଟିଣା ସେଠୀ ୭ ମାସ, ନଟବର ଚୌଧୁରୀ, ଅର୍ଜ୍ଜୁନ ସାହୁ ଓ ଶ୍ରୀନାଥ ସେଠୀ ନଅ ମାସ, ବୀରଭଦ୍ର କରଣ ଆଠ ମାସ ରେଙ୍ଗୁନ ସେଣ୍ଟ୍ରାଲ ଜେଲରେ ବନ୍ଦୀ ହୋଇ ରହିଥିଲେ ।

ଭାରତର ଇମ୍ଫାଲଠାରେ ପହଞ୍ଚି ଆଜାଦ୍ ହିନ୍ଦ୍ ଫୌଜ ଭୟାବହ ଯୁଦ୍ଧ କରି ତାହା ଦଖଲ କରିଥିଲେ ଓ ପରେ ଦୈବ ଦୁର୍ବିପାକ ଯୋଗୁ ଇମ୍ଫାଲ୍ ଛାଡ଼ି ଆସିବାକୁ ବାଧ ହୋଇଥିଲେ । ଇମ୍ଫାଲ ଯୁଦ୍ଧର ବନ୍ଦୀଭାବେ କୀର୍ତ୍ତନ ପ୍ରଧାନ ଦେଢ଼ ବର୍ଷ ଓ ଦଣ୍ଡପାଣି ନାୟକ ଛଅ ମାସ ବ୍ରିଟିଶ୍‌ଙ୍କ ଝିକର ଗାଛିଆ ଓ କ୍ୟାମ୍ପ ଜେଲରେ ରହିଥିଲେ । ସେହି ଯୁଦ୍ଧ କ୍ଷେତ୍ରରୁ ଫେରିବା ବାଟରେ ବନ୍ଦୀ ହୋଇ ବୃନ୍ଦାବନ ନାୟକ, ବୁଦ୍ଧି ନାୟକ, ଭୋବନି ନାୟକ ପ୍ରଭୃତି ବ୍ରିଟିଶ ସେନାଦ୍ୱାରା ବନ୍ଦୀ ହୋଇ ରେଙ୍ଗୁନ ସେଣ୍ଟ୍ରାଲ ଜେଲରେ ଆଠମାସ ଲେଖାଏଁ କାରାଦଣ୍ଡ ଭୋଗ କରିଥିଲେ ।

ଆତ୍ମସମର୍ପଣକାରୀ ଇଂରେଜ ସୈନ୍ୟବାହିନୀର ଓଡ଼ିଆ ସୈନ୍ୟ- ଇଂରେଜ ସରକାରଙ୍କ ସେନାବାହିନୀରେ ଓଡ଼ିଆଙ୍କ ସଂଖ୍ୟା ନଗଣ୍ୟ ଥିବାରୁ ସିଙ୍ଗାପୁରଠାରେ ଜାପାନ ସେନାବାହିନୀ ନିକଟରେ ଆତ୍ମସମର୍ପଣ କରିଥିବା ସୈନ୍ୟଙ୍କ ଭିତରେ ମାତ୍ର ତିନି ଚାରି ଜଣ ଓଡ଼ିଆ ସୈନ୍ୟ ରହିଥିଲେ । ସେମାନଙ୍କ ମଧ୍ୟରେ କେର୍ଣ୍ଣେଲ ବ୍ରଜମୋହନ ପଟ୍ଟନାୟକ ଅନ୍ୟତମ । ବ୍ରଜ ମୋହନ ପଟ୍ଟନାୟକ ଡେଲାଙ୍ଗ ନିବାସୀ ତତ୍କାଳୀନ ଡେପୁଟି ମେଜିଷ୍ଟ୍ରେଟ ରାଧା ମୋହନ ପଟ୍ଟନାୟକଙ୍କ ଜ୍ୟେଷ୍ଠ ପୁତ୍ର ଭାବରେ ୧୯୧୩ ମାର୍ଚ୍ଚ ଆଠ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ବିହାର-ଓଡ଼ିଶାର ବିହାର ସବଡିଭିଜନରେ ବହୁକାଳ କାର୍ଯ୍ୟ କରିଥିବାରୁ ତାଙ୍କର ଶିକ୍ଷା ବିହାରରେ ହୋଇଥିଲା । ସେ ପାଟନା ମେଡିକାଲ କଲେଜରୁ ଏମ୍.ବି.ବି.ଏସ୍. ପାଶ୍ କରି ୧୯୪୧ରେ ବ୍ରିଟିଶ ସେନା ବାହିନୀରେ କ୍ୟାପଟେନ ପଦରେ ଯୋଗ ଦେଇଥିଲେ । ସେ ସିଙ୍ଗାପୁରରେ ଅବସ୍ଥିତ ଥିବା ସମୟରେ ବ୍ରିଟିଶ ସେନା ଜାପାନ ନିକଟରେ ଆତ୍ମସମର୍ପଣ କରିବାକୁ ଜାପାନର ଯୁଦ୍ଧ ବନ୍ଦୀ ଶିବିରରେ ଆବଦ୍ଧ ହୋଇ ରହିଥିଲେ ।

୧୯୪୩ ମସିହାରେ ନେତାଜୀଙ୍କ ଆହ୍ୱାନରେ ଆଜାଦ୍ ହିନ୍ଦ୍ ଫୌଜରେ ସେ ଯୋଗ ଦେଇ ମେଡିକାଲ ବୋର୍ଡର ଅଧ୍ୟକ୍ଷ ଭାବେ ନିଯୁକ୍ତି ପାଇଥିଲେ । ସେହି ବର୍ଷ ଅକ୍ଟୋବର ମାସରେ ଆଜାଦ୍ ହିନ୍ଦ୍ ସରକାର ଗଠନ ହେବା ପରେ ୧୯୪୪ ମସିହାରେ ଡାକ୍ତର ପଟ୍ଟନାୟକ ସେହି ସରକାରଙ୍କ ଶ୍ରମ ବିଭାଗର ଦାୟିତ୍ୱ ଗ୍ରହଣ କରିଥିଲେ । ସେ ଆଜାଦ୍ ହିନ୍ଦ୍ ସରକାରଙ୍କର ରେଙ୍ଗୁନରେ ଥିବା ମୁଖ୍ୟ କାର୍ଯ୍ୟାଳୟରେ ଯୋଗ ଦେବାକୁ ଆସିବା ବେଳେ ଓଡ଼ିଆମାନେ

ଉତ୍ସାହିତ ହୋଇ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ସେହି ସାଧାରଣ ସଭାରେ ତାଙ୍କ ଫୁଲ ମାଳାଟି ୫,୦୦୦ (ପାଞ୍ଚହଜାର) ଟଙ୍କାରେ ନିଲାମ ହୋଇଥିଲା । ସେ ସେହି ଅର୍ଥକୁ ଉତ୍କଳ ଶ୍ରମିକ ସଙ୍ଗଠନପାଇଁ ଦାନ କରିଥିଲେ ।

ଡାକ୍ତର ପଟ୍ଟନାୟକ ଆଂଗ୍ଲୋ-ଆମେରିକାନ ବାହିନୀ ପକ୍ଷରୁ ଭୟଙ୍କର ବୋମା ମାଡ଼ ଚାଲିଥିବା ଅଞ୍ଚଳରେ ସଦଳବଳ ପହଞ୍ଚି ଲୋକଙ୍କ ଥଇଥାନ ଓ ସାହାଯ୍ୟର ବ୍ୟବସ୍ଥା କରୁଥିଲେ । ତାଙ୍କର ଧୈର୍ଯ୍ୟ, ସାହସ ଓ କର୍ତ୍ତବ୍ୟନିଷ୍ଠା ଅବର୍ଣ୍ଣନୀୟ ଥିଲା । ଯୁଦ୍ଧ ଶେଷରେ ସେ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ଦ୍ୱାରା ବନ୍ଦୀ ହୋଇ ଦିଲ୍ଲୀ ଲାଲକିଲ୍ଲାର ଐତିହାସିକ ବିଚାର ପରେ ମୁକ୍ତିଲାଭ କରିଥିଲେ ।

ପୂର୍ବେ ବ୍ରିଟିଶ ସେନାରେ କାର୍ଯ୍ୟ କରୁଥିବା ଦାମୋଦର ପଣ୍ଡା ଆଜାଦ୍ ହିନ୍ଦ୍ ଫୌଜର ବାହାଦୁର ସେନାରେ ଯୋଗ ଦେଇ ଭାରତ ଆକ୍ରମଣ କରି ମଣିପୁରର ମୌରାଙ୍ଗ ଗ୍ରାମ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । ପ୍ରାକୃତିକ ବିପର୍ଯ୍ୟୟରୁ ପଛକୁ ହଟିବା ବେଳେ ବନ୍ଦୀ ହୋଇ ପାକିସ୍ଥାନର ମୁଲତାନ କାରାଗାରରେ ଏକ ବର୍ଷ ବନ୍ଦୀ ହୋଇ ରହିଥିଲେ । ପଞ୍ଚୁ ରାଉତ, ଚିନ୍ତାମଣି ପାତ୍ର ଦୁହେଁ ପ୍ରଥମେ ଜାପାନ ସେନାଠାରେ ଆତ୍ମସମର୍ପଣ କରି ପରେ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗ ଦେଇ ଭାରତ ସୀମାରେ ଯୁଦ୍ଧ କରୁଥିଲେ । ସେମାନେ ସେଠାରୁ ବନ୍ଦୀ ହୋଇ ଭାରତର ଝିକର ଗାଛିଆ ଓ ନୀଳଗଞ୍ଜ ମିଲିଟାରୀ କ୍ୟାମ୍ପରେ ଆଠ ମାସ ନଜର ବନ୍ଦୀ ଭାବରେ ରହିଥିଲେ ।

ଜାପାନ ସେନାବାହିନୀ ଗୁପ୍ତରେ ନେତାଜୀଙ୍କୁ ଜଣାଇଦେଲେ ଯେ ସେମାନେ ଭାରତର ସୀମାନ୍ତରେ ଅବସ୍ଥିତ ଇମ୍ଫାଲ ଉପରେ ଆକ୍ରମଣ କରିବାର ଯୋଜନା କରିଛନ୍ତି । ନେତାଜୀ କାଳବିଳମ୍ବ ନକରି ଆଜାଦ୍ ହିନ୍ଦ୍ ଫୌଜର ବଛାବଛା ଅଫିସର, ସୈନ୍ୟ, ଅସ୍ତ୍ରଶସ୍ତ୍ର ନେଇ ବର୍ମା ସୀମାନ୍ତରେ ୧୯୪୪ ଜାନୁଆରି ବେଳକୁ ଏକତ୍ରିତ ହୋଇ ଭାରତ ଭିତରେ ପ୍ରବେଶ କରିବାକୁ ପ୍ରସ୍ତୁତ ରହିଲେ । ସିଙ୍ଗାପୁରରୁ ବର୍ମା ବାଟ ଦେଇ ଇମ୍ଫାଲ ପର୍ଯ୍ୟନ୍ତ ୧୧ ଶହ ମାଇଲ ବାଟ ଜଙ୍ଗଲ ମଧ୍ୟ ଦେଇ ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟମାନେ ପାଦରେ ଚାଲିଥିଲେ । ମନରେ ଦୃଢ଼ ବିଶ୍ୱାସ ଯେ ସେମାନେ ଇଂରେଜ ସରକାରଙ୍କୁ ଭାରତ ଭୂମିରେ ପରାସ୍ତ କରି ବିତାଡ଼ିତ କରିବେ । ନେତାଜୀ ସୈନ୍ୟମାନଙ୍କ ସଂଗରେ ବହୁତ ସମୟରେ ଚାଲିଚାଲି ସେମାନଙ୍କୁ ଉତ୍ସାହିତ କରୁଥିଲେ । ନେତାଜୀ ସୈନ୍ୟମାନଙ୍କୁ ଭରସା ଦେଉଥିଲେ, "ମୁଁ ତୁମକୁ ଜବାବ ଦେଉଛି, ଦୁଃଖ ସୁଖ ସବୁବେଳେ ମୁଁ ତୁମ ସାଂଗରେ ରହିଥିବି । ଜୀବନ ଓ ମରଣ ସବୁବେଳେ ତୁମେ ଯଦି ମୋ ସାଂଗରେ ରହିଥିବ, ମୁଁ ତୁମକୁ ବିଜୟ ପଥରେ ନେଇଯିବି । ତୁମର ଯୁଦ୍ଧ ଡାକରା ହେଉ 'ଦିଲ୍ଲୀ ଚଲୋ, ଦିଲ୍ଲୀ ଚଲୋ' ।

## ଭାରତ ମାଟିରେ ତ୍ରିରଙ୍ଗା

୧୯୪୪ ମସିହା ଫେବୃଆରି ୩ ତାରିଖରେ ଇମ୍ଫାଲ ଆକ୍ରମଣ କରିବାକୁ ଆଜାଦ୍ ହିନ୍ଦ୍ ଫୌଜର ଆଗୁଆ ବାହିନୀ ଯାତ୍ରା ଆରମ୍ଭ କଲେ । ନେତାଜୀ ସେହି ବାହିନୀକୁ କହିଥିଲେ, ଆମର ଆଉ ସମୟ ନାହିଁ । ଯେଉଁ ରାସ୍ତା ସାମ୍ନାରେ ଲମ୍ବିଯାଇଛି ତାକୁ ଆମର ପୂର୍ବପୁରୁଷମାନେ ନିର୍ମାଣ କରିଥିଲେ । ଅସ୍ତ୍ର ଉଠାଅ ଓ ସେହି ପଥରେ ଆଗେଇ ଚାଲ । ସେ କହିଥିଲେ, "ଆମେ ଶତ୍ରୁମାନଙ୍କ ଭିତରେ ପଶି ସେମାନଙ୍କୁ ଧ୍ୱଂସ କରିବା କିମ୍ବା ଯଦି ଈଶ୍ୱର ଚାହୁଁଥାନ୍ତି ସହିଦର ମୃତ୍ୟୁ ଲଭିବା । ଅନ୍ତିମ ନିଦ୍ରାରେ ଶୋଇବା ପୂର୍ବରୁ ସେଇ ପଥକୁ ଚୁମ୍ବନ କରିବା, ଯେଉଁ ପଥ ଦିଲ୍ଲୀଯାଏ ଲମ୍ବିଛି । ଦିଲ୍ଲୀକୁ ପଥ ସ୍ୱାଧୀନତାର ପଥ । ଦିଲ୍ଲୀ ଚଲୋ ।

୧୯୪୪ ମସିହା ମାର୍ଚ୍ଚ ୧୯ ତାରିଖରେ ଆଜାଦ୍ ହିନ୍ଦ୍ ଫୌଜ ଭାରତ ସୀମାନ୍ତ ଭିତରେ ପ୍ରବେଶ କଲେ । ସେତେବେଳେ ମେଜର ଜେନେରାଲ ଏମ୍. ଜେଡ୍ କିଆନି ସେନାଧ୍ୟକ୍ଷ ଥିଲେ । ସେମାନେ ଭାରତର ଜାତୀୟ ପତାକା ସେଠାରେ ଉତ୍ତୋଳନ କଲେ । ମାତୃଭୂମିକୁ ବାରମ୍ବାର ଚୁମ୍ବନ କଲେ । ଆବିଦ୍ ହାସାନ ଅତ୍ୟନ୍ତ ଦକ୍ଷତାର ସହିତ ଆଜାଦ୍ ହିନ୍ଦ୍ ଫୌଜକୁ ନେତୃତ୍ୱ ଦେଉଥିଲେ । ବ୍ରିଟିଶ ବାହିନୀ ତୁଳନାରେ ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟ ସଂଖ୍ୟା କମ୍ ଥିଲେ ମଧ ସେମାନେ ଅସୀମ ବୀରତ୍ୱର ସହିତ ଲଢ଼ାଇ କରି ମଣିପୁରର ମଏରାଙ୍ଗ ସହର ଦଖଲକୁ ନେଲେ । ବହୁ ସ୍ଥାନୀୟ ଲୋକ ଆଜାଦ୍ ହିନ୍ଦ୍ ଫୌଜକୁ ସହାୟତା ଯୋଗାଇଦେଲେ ଓ ସମର୍ଥନ କଲେ । ୧୯୪୪ ମସିହା ଏପ୍ରିଲ ୧୪ ତାରିଖରେ କର୍ଣ୍ଣେଲ ମଲ୍ଲିକ ସେଠାରେ ପାହାଡ଼ ଉପରେ ତ୍ରିରଙ୍ଗା ପତାକା ଉଡ଼ାଇଲେ । ୭୫ ଦିନ ପର୍ଯ୍ୟନ୍ତ ଏହି ଅଞ୍ଚଳ ଆଜାଦ୍ ହିନ୍ଦ୍ ସରକାରର କବ୍‌ଜାରେ ରହିଥିଲା । ଇମ୍ଫାଲ ସହରକୁ ଆକ୍ରମଣର ପ୍ରସ୍ତୁତି ସ୍ୱରୂପ ଜାପାନ ସେନାବାହିନୀ ସବୁଦିଗରୁ ରାସ୍ତା ଅବରୋଧ କରିଦେଲେ । କିନ୍ତୁ ଇଂରେଜ ସରକାର ନିଜର୍ ବିମାନବାହିନୀ ସାହାଯ୍ୟରେ ଆକାଶମାର୍ଗରୁ ସେମାନଙ୍କ ସୈନ୍ୟବାହିନୀକୁ ଅସ୍ତ୍ରଶସ୍ତ୍ର ଓ ଖାଦ୍ୟ ଯୋଗାଇଦେଲେ । ମାତ୍ର ଜାପାନ ଓ ଆଜାଦ୍ ହିନ୍ଦ୍ ସୈନ୍ୟମାନଙ୍କ ପାଇଁ ଖାଦ୍ୟ ଓ ଅସ୍ତ୍ରଶସ୍ତ୍ର ଆକାଶମାର୍ଗରୁ ଆଣିବା ଜାପାନର ବାୟୁସେନା ପକ୍ଷରେ ସମ୍ଭବପର ହେଲା ନାହିଁ । ଦୁର୍ଯ୍ୟୋଗକୁ ମେ' ମାସରେ ଇମ୍ଫାଲ ଅଞ୍ଚଳରେ ପ୍ରବଳ ଲଗାଣ ବର୍ଷା ଲାଗି ରହିଲା । ଦୁର୍ଗମ ଜଙ୍ଗଲିଆ ରାସ୍ତା ପାଣି କାଦୁଅରେ ଭରିଯିବା ପରେ ଆଜାଦ୍ ହିନ୍ଦ୍ ଫୌଜ ଓ ଜାପାନୀ ସେନା ପକ୍ଷରେ ଇମ୍ଫାଲକୁ ଅଧିକାର କରିବା ସମ୍ଭବପର ହେଲାନାହିଁ । ଇଂରେଜ ସରକାର ଇମ୍ଫାଲକୁ ନିଜ କବଳରେ ରଖିବାକୁ ସମର୍ଥ ହେଲେ । ମେ' ମାସ ପରଠାରୁ ଆଜାଦ୍ ହିନ୍ଦ୍ ସୈନିକମାନଙ୍କୁ ନେତାଜୀ ଘୋର ବିପଦର ସମ୍ମୁଖୀନ ହୋଇ ନିଜେ ପରିଚାଳନା କରୁଥିଲେ ।

୬ ଜୁଲାଇ, ୧୯୪୪ରେ ନେତାଜୀ ମହାତ୍ମାଗାନ୍ଧିଙ୍କୁ ବେତାର ମାଧ୍ୟମରେ ବାର୍ତ୍ତା ଦେଲେ ଯେ "ଭାରତକୁ ସ୍ୱାଧୀନତା ଦେବା ଇଂରେଜମାନଙ୍କର ଇଚ୍ଛା ନୁହେଁ । ତେଣୁ ଆମ ଦୁହିଁଙ୍କୁ ହାତ ମିଳାଇ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧରେ ସଂଗ୍ରାମ କରିବାକୁ ପଡ଼ିବ । ଆମପାଇଁ ବର୍ତ୍ତମାନର ବିଶ୍ୱଯୁଦ୍ଧ ଏକ ସୁବର୍ଣ୍ଣ ସୁଯୋଗ ସୃଷ୍ଟି କରିଛି । ଯୁଦ୍ଧ ବିନା ସ୍ୱାଧୀନତାର ସମ୍ଭାବନା ଥିଲେ ମୁଁ ନିଜ ବାସଗୃହ ଛାଡ଼ି ବିଦେଶକୁ ଯାଇ ନ ଥାନ୍ତି । ମୁଁ ଯାହା କିଛି କରିଛି ସବୁ ମୋ ମାତୃଭୂମିପାଇଁ, ଭାରତର ଗୌରବ ବୃଦ୍ଧି ଓ ମୁକ୍ତିପାଇଁ । ଭାରତର ଶେଷ ମୁକ୍ତି ସଂଗ୍ରାମ ଆରମ୍ଭ ହୋଇଛି । ଆଜାଦ୍ ହିନ୍ଦ୍ ସେନାର ବୀର ସୈନିକମାନେ ଭାରତ ଭୂମିରେ ପ୍ରାଣ ଉତ୍ସର୍ଗ କରୁଛନ୍ତି । ଏହି ସଂଗ୍ରାମ ଭାରତରୁ ଇଂରେଜମାନଙ୍କୁ ବହିଷ୍କାର କରିବାପାଇଁ ଚାଲୁ ରହିବ । ନୂଆ ଦିଲ୍ଲୀର ଭାଇସରାୟ ଭବନ ଉପରେ ଜାତୀୟ ପତାକା ନ ଉଡ଼ିବା ପର୍ଯ୍ୟନ୍ତ ଏହାର ବିରାମ ହେବ ନାହିଁ । ହେ ଭାରତର ଜନନାୟକ ! ଏହି ପବିତ୍ର ସଂଗ୍ରାମରେ ଆମେ ଆପଣଙ୍କର ଆଶୀର୍ବାଦ ଓ ଶୁଭେଚ୍ଛା କାମନା କରୁଛୁ ।"

୧୯୪୪ ମସିହା ଜୁଲାଇ ୧୮ ତାରିଖରେ ଜାପାନୀ ସୈନ୍ୟମାନଙ୍କୁ ତୁରନ୍ତ ଭାରତ ସୀମାନ୍ତ ଅତିକ୍ରମ କରି ପଳାଇଯିବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ନେତାଜୀ ସେହି ସମୟରେ ଆଜାଦ୍ ହିନ୍ଦ୍ ଫୌଜର ଯେଉଁ ସୈନ୍ୟମାନେ ବ୍ରିଟିଶମାନଙ୍କ ସହିତ ଲଢ଼ି ଯୁଦ୍ଧ କ୍ଷେତ୍ରରେ ଅସୀମ ବୀରତ୍ୱ ପ୍ରଦର୍ଶନ କରିଥିଲେ ସେମାନଙ୍କୁ ଏକ ସ୍ୱତନ୍ତ୍ର ଉତ୍ସବର ଆୟୋଜନ କରି ପଦକ ପ୍ରଦାନ କରିଥିଲେ । ସେ କହିଥିଲେ ଯେ ପ୍ରକୃତି ପ୍ରତିକୂଳ ହେବାରୁ ସେମାନେ ମଏରଙ୍ଗ ଛାଡ଼ି ପଛଘୁଞ୍ଚା ଦେବାକୁ ବାଧ୍ୟ ହେଉଛନ୍ତି, କିନ୍ତୁ ପୁନର୍ବାର ଆକ୍ରମଣ ଜାରି ରହିବ ।

କୋହିମାରେ ଆଜାଦ୍ ହିନ୍ଦ୍ ଫୌଜ ସାହାନବାଜ ଖାଁଙ୍କ ନେତୃତ୍ୱରେ ଇଂରେଜ ସୈନ୍ୟମାନଙ୍କୁ ପରାସ୍ତ କରି ସେଠାରେ ତ୍ରିରଙ୍ଗା ପତାକା ଉଡ଼ାଇଥିଲେ । ଜାପାନୀ ସୈନିକମାନେ କୋହିମା ଲଢ଼ାଇରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

## ଆଜାଦ୍ ହିନ୍ଦ୍ ଫୌଜର ଯୁଦ୍ଧ ବିରତି ଘୋଷଣା

୧୯୪୪ ଶେଷ ଭାଗରେ ଇଂରେଜ ସେନାପତି ଉଇଲିୟମ୍ ସ୍ଲିମ୍ ଜାପାନୀ ଓ ଆଜାଦ୍ ହିନ୍ଦ୍ ସୈନ୍ୟଙ୍କୁ ବର୍ମାରୁ ତଡ଼ିଦେବାର ସମସ୍ତ ଯୋଜନା କରି ସେଥିରେ ସଫଳତା ଲାଭ କରିଥିଲେ । ବ୍ରିଟିଶ ଓ ଆମେରିକାର ଲଢୁଆ ଯୁଦ୍ଧ ଜାହାଜ ଆଜାଦ୍ ହିନ୍ଦ୍ ଫୌଜ ଉପରେ ଆକ୍ରମଣ କରି ସେମାନଙ୍କର ପ୍ରଭୂତ କ୍ଷତି ଘଟାଇଥିଲେ । ଇମ୍ଫାଲ ଓ କୋହିମା ଅଭିଯାନରୁ ପରାଜିତ ହୋଇ ଫେରିବା ପରେ ନେତାଜୀ କିନ୍ତୁ ଆଜାଦ୍ ହିନ୍ଦ୍ ଫୌଜର ମନୋବଳକୁ ଦୃଢ଼ ରଖିବାକୁ ସକ୍ଷମ ହୋଇଥିଲେ । ୧୯୪୫ ମସିହା ଫେବ୍ରୁଆରି ବେଳକୁ

ଆଜାଦ୍ ହିନ୍ଦ୍ ସୈନିକମାନେ ମାଣ୍ଡାଲେ ନିକଟବର୍ତ୍ତୀ ଇରାବତୀ ନଦୀ କୂଳରେ ବ୍ରିଟିଶ ସେନାମାନଙ୍କ ସହିତ ଘମାଘୋଟ ଲଢ଼ାଇରେ ବ୍ୟାପୃତ ଥିଲେ । ସେଠି ଥିବା ମାଉଣ୍ଟ ପୋପାରେ ନେତାଜୀ ଫେବ୍ରୁଆରିରୁ ମାର୍ଚ୍ଚ ଓ ଅପ୍ରେଲ ଯାଏ ରହିଥିଲେ । ମାର୍ଚ୍ଚ ମାସରେ ବ୍ରିଟିଶ ସେନାପତି ଉଇଲିୟମ୍ ସ୍ଲିମ୍ ମେଇକ୍‌ଟିଲା ଉପରେ ଆକ୍ରମଣ କରି ଏମାନଙ୍କୁ ପଛଘୁଞ୍ଚା ଦେବାରେ ବାଧ କରିଥିଲେ । ତେବେ ପ୍ରତ୍ୟାବର୍ତ୍ତନ ସମୟରେ ନେତାଜୀ, ତାଙ୍କର ସାମରିକ ଉପଦେଷ୍ଟା ଓ ଅଙ୍ଗରକ୍ଷୀ ଗୁଳିବର୍ଷଣର ସମ୍ମୁଖୀନ ହେଲେ । ନେତାଜୀ ଅବଶ୍ୟ ବାରମ୍ବାର ଏହିପରି ଦୁଃସାହସକୁ ନିଜେ ବରଣ କରୁଥିଲେ । ସେ ଆଜାଦ୍ ହିନ୍ଦ୍ ଫୌଜର ମୁଖ୍ୟ ସେନାପତି କିଆନିଙ୍କ ଉଦ୍ଦେଶ୍ୟରେ କହିଥିଲେ, "ମୁଁ ଏହିଠାରେ ହିଁ ମରିବି ।" ଅବସ୍ଥା ଏପରି ସଙ୍ଗୀନ ହୋଇଥିଲା ଯେ ଉଭୟ ଜାପାନୀ ସେନାଧକ୍ଷ ତାକାହାସି ଓ ଆଜାଦ୍ ହିନ୍ଦ୍ ଫୌଜର ସେନାଧକ୍ଷ କିଆନି ରେଙ୍ଗୁନରେ ଥିବା ମୁଖ୍ୟ କାର୍ଯ୍ୟାଳୟକୁ ତାରବାର୍ତ୍ତା ପଠାଇଥିଲେ । ସେମାନଙ୍କର ପ୍ରବଳ ଅନୁରୋଧ ଫଳରେ ନେତାଜୀ ରେଙ୍ଗୁନ୍ ଯିବାପାଇଁ ଅବଶେଷରେ ରାଜି ହୋଇଥିଲେ । ତାକାହାସି ନେତାଜୀଙ୍କୁ କହିଥିଲେ, "ମୁଁ ମରିବା ପୂର୍ବରୁ ଆପଣ ମରିପାରିବେ ନାହିଁ । ପୁନଶ୍ଚ ଏହି ସ୍ଥାନୀୟ ମାମୁଲି ସଂଘର୍ଷପାଇଁ ଆପଣ ଜୀବନ ପଣ କରିବା ଉଚିତ ହେଉ ନାହିଁ । ଆପଣଙ୍କ ମୃତ୍ୟୁରେ ମୁକ୍ତି ସଂଗ୍ରାମ ନେତୃତ୍ୱହୀନ ହୋଇଯିବାର ଆଶଙ୍କା ରହିଛି ।" ଏହିପରି ବହୁ ଉପାୟରେ ବୁଝାଇବା ପରେ ରଣସାମ୍ମୁଖ୍ୟରୁ ରେଙ୍ଗୁନ୍‌କୁ ହଟିଯିବାପାଇଁ ବହୁ କଷ୍ଟରେ ନେତାଜୀ ରାଜି ହୋଇଥିଲେ ।

୧୯୪୫ ମସିହା ଏପ୍ରିଲ ୧୪ ତାରିଖରେ ନେତାଜୀ ରେଙ୍ଗୁନ୍ ଛାଡ଼ିଲେ । ମେ' ମାସ ୮ ତାରିଖରେ ହିଟଲର ଆତ୍ମହତ୍ୟା କଲେ ଓ ଜର୍ମାନୀ ଆତ୍ମସମର୍ପଣ କଲା । ନେତାଜୀ ବୁଝିସାରିଥିଲେ ଯେ ଅକ୍ଷଶକ୍ତି ନିଶ୍ଚିତ ଭାବରେ ଯୁଦ୍ଧରେ ପରାସ୍ତ ହେବ । ଜୁଲାଇ ୮ ତାରିଖରେ ସୁଭାଷ ଚନ୍ଦ୍ର ବୋଷ ଆଜାଦ୍ ହିନ୍ଦ୍ ଫୌଜର ଯେଉଁ ସୈନ୍ୟମାନେ ସ୍ୱାଧୀନତା ଲଢ଼ାଇ କରି ପ୍ରାଣବଳି ଦେଇଥିଲେ, ସେମାନଙ୍କ ପାଇଁ ଏକ ସ୍ମୃତିସ୍ତମ୍ଭ ସିଂଗାପୁରଠାରେ ନିର୍ମାଣ କରିଥିଲେ । ଲର୍ଡ ମାଉଣ୍ଟବାଟେନ ସିଂଗାପୁରକୁ ପୁନର୍ବାର ଦଖଲକୁ ନେବା ପରେ ସେହି ସ୍ମୃତିସ୍ତମ୍ଭକୁ ଧ୍ୱଂସ କରିଥିଲେ । ୧୯୯୪ ମସିହାରେ ତା'ର ପୁନଃନିର୍ମାଣ କରାଯାଇଛି ।

## ଜାପାନର ପରାଜୟ ଓ ନେତାଜୀଙ୍କ ଶେଷ ବିମାନ ଯାତ୍ରା

୧୯୪୫ ମସିହା ଅଗଷ୍ଟ ମାସ ୬ ତାରିଖରେ ହିରୋସୀମା ଓ ୯ ତାରିଖରେ ନାଗାସାକି ଉପରେ ଆମେରିକା ପରମାଣୁ ବୋମା ନିକ୍ଷେପ କଲା ଏବଂ ଜାପାନ୍ ଅଗଷ୍ଟ ୧୦ ତାରିଖରେ ଆତ୍ମସମର୍ପଣ କରିବାର ପ୍ରସ୍ତାବ ଦେଲା । ନେତାଜୀ ଋଷିଆକୁ ଯିବାକୁ ଚାହିଁଲେ



**୧୯୪୫ ଅଗଷ୍ଟ ୨ରେ ବ୍ୟୋମଯାନରୁ ନେତାଜୀଙ୍କ ଅବତରଣ**

ଏବଂ ଜାପାନର ଫିଲ୍ଡ ମାର୍ଶାଲ କାଉଣ୍ଟ ଟେରାଉଚି ନେତାଜୀଙ୍କୁ ସାହାଯ୍ୟ କରିବାକୁ ସ୍ଥିର କଲେ । ଅଗଷ୍ଟ ୧୫ ତାରିଖ ଦିନ ଜାପାନର ଆତ୍ମସମର୍ପଣ ଘୋଷିତ ହେବା ପରେ ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାର ମନ୍ତ୍ରିମଣ୍ଡଳର ଏକ ବୈଠକ ବସିଲା ଓ ସେଥିରେ ସମସ୍ତେ ଏକ ସ୍ୱରରେ ନେତାଜୀଙ୍କର ସିଂଗାପୁରରେ ରହିବା ଅତ୍ୟନ୍ତ ବିପଦଜନକ ହୋଇଥିବାରୁ ତାଙ୍କୁ

ତୁରନ୍ତ ସିଂଗାପୁର ଛାଡ଼ିବାକୁ ପରାମର୍ଶ ଦେଲେ । ତିନିଜଣ ଅତ୍ୟନ୍ତ ବିଶ୍ୱାସୀ ଆଜାଦ୍ ହିନ୍ଦ୍ ଫୌଜର ଅଫିସର କର୍ଣ୍ଣେଲ ହବିବୁର ରେହମନ, କର୍ଣ୍ଣେଲ ପ୍ରୀତମ୍ ସିଂହ ଓ କର୍ଣ୍ଣେଲ ଆୟାରଙ୍କ ସହିତ ଏକ ବୋମା ନିକ୍ଷେପକାରୀ ବିମାନରେ ନେତାଜୀ ସିଂଗାପୁରରୁ ବ୍ୟାଂକକ୍ ଅଭିମୁଖେ ଯାତ୍ରା କଲେ । ସେଠାରେ ଗୋଟିଏ ରାତ୍ରି ରହି ଆଜାଦ୍ ହିନ୍ଦ୍ ଫୌଜର ସାମରିକ ଓ ବେସାମରିକ ଅଫିସରଙ୍କ ସହିତ ଆଲୋଚନା କରି ଦକ୍ଷିଣ ଭିଏତ୍‌ନାମର ବନ୍ଦର ନଗରୀ ସାଇଗନ୍ ଅଭିମୁଖେ ଗଲେ । ସୁଭାଷ ଚନ୍ଦ୍ର ବୋଷଙ୍କୁ ଋଷିଆ ଅଧିକୃତ ମାଞ୍ଚୁରିଆରେ ପହଞ୍ଚାଇ ଦେବାକୁ ଜାପାନ କର୍ତ୍ତୃପକ୍ଷ ପ୍ରତିଶ୍ରୁତି ଦେଇଥିଲେ । ସାଇଗନ୍‌ରେ ପହଞ୍ଚିବା ପରେ ଗୋଟିଏ ବମ୍ବର ପ୍ଲେନ୍‌ରେ ତାଙ୍କୁ ବହୁ କଷ୍ଟରେ ହବିବୁର ରେହମନଙ୍କ ସହିତ ଯିବାପାଇଁ ବ୍ୟବସ୍ଥା କରିଦିଆଗଲା । ସାଇଗନ୍ ବିମାନବନ୍ଦରରେ ଜାପାନ ଅଫିସରମାନେ ନେତାଜୀ ଓ ତାଙ୍କ ସାଙ୍ଗମାନଙ୍କୁ ଭଦ୍ରୋଚିତ ବ୍ୟବହାର କରିନଥିଲେ । ଅଗଷ୍ଟ ୧୯ ତାରିଖ ପର୍ଯ୍ୟନ୍ତ ନେତାଜୀଙ୍କର କୌଣସି ଖବର ମିଳିଲା ନାହିଁ । ୧୯ ତାରିଖ ଦିନ କର୍ଣ୍ଣେଲ ଆୟାରଙ୍କୁ ଜଣାଇ ଦିଆଗଲା ଯେ ତାଇପେଇଠାରେ ଏକ ବିମାନ ଦୁର୍ଘଟଣାରେ ନେତାଜୀଙ୍କର ମୃତ୍ୟୁ ଘଟିଛି । ଅଗଷ୍ଟ ୨୩ ତାରିଖ ଦିନ ନେତାଜୀଙ୍କ ମୃତ୍ୟୁ ସମ୍ବାଦ ଟୋକିଓ ରେଡ଼ିଓରୁ ସାରା ବିଶ୍ୱରେ ପ୍ରଚାରିତ ହେଲା, କିନ୍ତୁ ପୂର୍ବ-ଏସିଆର କେହି ଏକଥା ବିଶ୍ୱାସ କଲେ ନାହିଁ । ସୁଭାଷଙ୍କ ବିମାନ ସାଇଗନ୍ ଛାଡ଼ି ତାଇୱାନ୍‌ର ରାଜଧାନୀ ତାଇପେଇଠାରେ ଅବତରଣ କରିଥିଲା । ବିମାନ ପୁନର୍ବାର ଉଡ଼ାଣ ଆରମ୍ଭ କରିବା ବେଳେ ଅକସ୍ମାତ୍ ତଳକୁ ଖସିପଡ଼ି ଜଳିଗଲା । ସୁଭାଷ ଚନ୍ଦ୍ର ବୋଷ ଗୁରୁତର ଭାବେ ଆହତ ହୋଇଥିବାରୁ ତାଙ୍କୁ ଡାକ୍ତରଖାନାରେ ଭର୍ତ୍ତି କରାଗଲା । ସେଠାରେ ସେ ମୃତ୍ୟୁବରଣ କଲେ । ଅଗଷ୍ଟ ୨୦ ତାରିଖରେ ତାଇପେଇଠାରେ ତାଙ୍କର ଶବଦାହ କରାଯାଇଥିଲା । ସେପ୍ଟେମ୍ବର ୫ ତାରିଖରେ ନେତାଜୀଙ୍କ ଚିତାଭସ୍ମ ଟୋକିଓକୁ ଅଣାଗଲା ଓ ରେନ୍‌କୋଜୀ ବୌଦ୍ଧ ମନ୍ଦିରରେ ଏହି ଚିତାଭସ୍ମ ସୁରକ୍ଷିତ ଅଛି । ୧୯୫୭ ମସିହାରେ ପଣ୍ଡିତ ଜବାହରଲାଲ ନେହେରୁ, ୧୯୫୮ ମସିହାରେ ପୂର୍ବତନ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ଓ ୧୯୬୯ ମସିହାରେ ଶ୍ରୀମତୀ ଇନ୍ଦିରା ଗାନ୍ଧି ଏହି ମନ୍ଦିରକୁ ପରିଦର୍ଶନ କରି ସେମାନଙ୍କର ମନ୍ତବ୍ୟ ଲିପିବଦ୍ଧ କରିଛନ୍ତି ।

## ବିବାଦ ଘେରରେ ନେତାଜୀଙ୍କ ମୃତ୍ୟୁ

ସରକାରୀଭାବେ ୧୯୪୫ ଅଗଷ୍ଟ ୨୩ ତାରିଖ ଦିନ ଜାପାନ ସରକାର ରେଡ଼ିଓରେ ଘୋଷଣା କଲେ ଯେ ଅଗଷ୍ଟ ୧୮ ତାରିଖ ଦିନ ଅପରାହ୍ଣ ୩ ଟା ସମୟରେ ତାଇପେଇ ବିମାନ ବନ୍ଦରରେ ଏକ ବିମାନ ଦୁର୍ଘଟଣାରେ ଆଜାଦ୍ ହିନ୍ଦ୍ ଫୌଜର ସର୍ବୋଚ୍ଚ ଅଧିନାୟକ

ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ମୃତ୍ୟୁ ଘଟିଛି । ଅଗଷ୍ଟ ୨୪ ତାରିଖ ଦିନ ଭାରତବର୍ଷର ସମସ୍ତ ସମ୍ବାଦପତ୍ରରେ ଏହି ମୃତ୍ୟୁ ସମ୍ବାଦ ପ୍ରକାଶ ପାଇଥିଲା । ଭାରତର ଜନସାଧାରଣଙ୍କୁ ଏହି ସମ୍ବାଦ ହତବାକ୍ କରିଦେଇଥିଲା । ପରେ କିନ୍ତୁ ଏହାକୁ ଭାରତର ଜନସାଧାରଣ ବିଶ୍ୱାସ କରିନଥିଲେ । ଭାରତର ଗଭର୍ଣ୍ଣର ଜେନେରାଲ ଲର୍ଡ ୱାଭେଲ ଅଗଷ୍ଟ ୨୪ ତାରିଖରେ ତାଙ୍କର Viceroy's Journal ରେ ଲେଖିଛନ୍ତ-"I wonder if the Japanese announcement of Subhas Chandra Bose's death in an air crash is true. I suspect it very much, it is just what would be given out if he meant to go underground. Bose has again escaped."

ଲର୍ଡ ୱାଭେଲ୍ ଯାହା ଲେଖିଥିଲେ, ଆମେରିକାର ସର୍ବୋଚ୍ଚ ଗୋଏନ୍ଦା ସଂସ୍ଥା ତାଙ୍କ ରିପୋର୍ଟରେ ଏକା ଭଳି ତଥ୍ୟ ପ୍ରକାଶ କରିଛନ୍ତି । "There was a plan as part of the Hikarikikan to allow Bose to escape and to publish a false story regarding his death."

ବ୍ରିଟିଶ୍ ଗୋଏନ୍ଦା ସଂସ୍ଥା ବିମାନ ଦୁର୍ଘଟଣାରେ ନେତାଜୀଙ୍କ ମୃତ୍ୟୁ ସଂପର୍କରେ ସନ୍ଦେହ ପ୍ରକାଶ କରି ବାରମ୍ବାର ଯେଉଁମାନେ ପ୍ରତ୍ୟକ୍ଷଦର୍ଶୀ ସେମାନଙ୍କୁ ପଚରାଉଚରା କରିଛନ୍ତି । ନେତାଜୀଙ୍କ ମୃତ୍ୟୁ ହୋଇଛି କି ନାହିଁ, ସେ ସମ୍ବନ୍ଧରେ ଦୁଇ ଦୁଇ ଥର ତଦନ୍ତ ହୋଇଛି । ୧୯୫୬ ମସିହାରେ ଶାହାନବାଜ ଖାଁ ଯେ କି ଆଜାଦ୍ ହିନ୍ଦ୍ ଫୌଜର ମେଜର ଜେନେରାଲ ଥିଲେ ତାଙ୍କ ଅଧ୍ୟକ୍ଷତାରେ, ଦ୍ୱିତୀୟଟି ୧୯୭୦ ମସିହାରେ ବିଚାରପତି ଜି. ଡି. ଖୋସଲାଙ୍କ ଅଧ୍ୟକ୍ଷତାରେ କମିଶନ ଗଠିତ ହୋଇ ସୁଭାଷ ଚନ୍ଦ୍ର ବୋଷ ବିମାନ ଦୁର୍ଘଟଣାରେ ମରିଛନ୍ତି ବୋଲି ଲେଖିଥିଲେ ମଧ୍ୟ ତଦନ୍ତ ସମୟରେ କେତେକ ସାକ୍ଷୀ ନେତାଜୀ ମରି ନାହାନ୍ତି ବୋଲି ତଥ୍ୟମାନ ପ୍ରକାଶ କରିଥିଲେ । ସ୍ୱୟଂ ଶାହାନବାଜ ଖାଁ ୧୯୫୨ ମସିହାରେ ନେତାଜୀଙ୍କ ଜନ୍ମଦିବସ ପାଳନ ଅବସରରେ ଭାଷଣ ଦେଲାବେଳେ କହିଥିଲେ ଯେ ନେତାଜୀ ଆଜି ସୁଦ୍ଧା ଜୀବିତ ଅଛନ୍ତି, ଯାହା ୧୯୫୨ ମସିହା ଜାନୁଆରି ୨୪ ତାରିଖରେ 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ' ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା ।

ଭାରତ ବିଭାଜନ ପରେ ନେତାଜୀଙ୍କର ବିଶ୍ୱସ୍ତ ସହକର୍ମୀ ହବିବୁର ରହମାନ୍ ପାକିସ୍ଥାନକୁ ଚାଲିଯାଇ ସେଠାରେ ଅବସ୍ଥାନ କରିଥିଲେ । ୧୯୪୯ ମସିହା ଡିସେମ୍ବର ମାସରେ ଲାହୋରରୁ ପ୍ରକାଶିତ ସିଭିଲ ଆଣ୍ଡ ମିଲିଟାରୀ ଗେଜେଟରେ କର୍ଣ୍ଣେଲ ହବିବୁର ରହମାନ୍‌ଙ୍କର ଏକ ବିବୃତ୍ତି ପ୍ରକାଶ ପାଇଥିଲା, ଯେଉଁଥିରେ କର୍ଣ୍ଣେଲ ରେହମାନ କହିଥିଲେ, "ବିମାନ

ଦୁର୍ଘଟଣାରେ ନେତାଜୀଙ୍କର ମୃତ୍ୟୁ ସଂପର୍କରେ ଏତେ ଦିନ ଧରି ସେ ଯାହା କହିଆସୁଥିଲେ ତାହା ଠିକ୍ ନୁହେଁ । ସେ ଜଣେ ସୈନିକ । ସୈନିକକୁ କମାଣ୍ଡରଙ୍କର ନିର୍ଦ୍ଦେଶ ମାନି ଚଳିବାକୁ ହୁଏ । ସୁତରାଂ ତାଙ୍କୁ ଯେଉଁଭଳି କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦିଆ ହୋଇଥିଲା ସେ ସେହିଭଳି କାର୍ଯ୍ୟ କରିଛନ୍ତି ।"

ଏହି ବିବୃତ୍ତିରୁ ଏହା ପ୍ରମାଣିତ ହେଉଛି ଯେ ନେତାଜୀଙ୍କ ବିମାନ ଦୁର୍ଘଟଣା ଖବର, ବିମାନ ଦୁର୍ଘଟଣାର ଛବି, ଜାପାନ ରେନକୋଜୀ ମନ୍ଦିରରେ ରଖାଯାଇଥିବା ନେତାଜୀଙ୍କର ଚିତାଭସ୍ମ ସବୁକିଛି ମିଥ୍ୟା । ୧୯୪୬ ମସିହା ମାର୍ଚ୍ଚ ୧୪ ତାରିଖରେ ଶାହାନବାଜ ଖାଁ ଗାନ୍ଧିଜୀଙ୍କୁ ଦେଖା କରିବା ଅବସରରେ ଗାନ୍ଧିଜୀ କହିଥିଲେ ଯେ ତାଙ୍କର ଅନ୍ତରଆତ୍ମାରେ ସେ ବିଶ୍ୱାସ କରନ୍ତି ସୁଭାଷ ଚନ୍ଦ୍ର ବୋଷ ଜୀବିତ ଅଛନ୍ତି । ଖୋସଲା କମିଶନଙ୍କ ଆଗରେ ସାକ୍ଷ୍ୟ ଦେଇ ମିରଟର ବାସିନ୍ଦା ଶାମଲାଲ ଜୈନ, ଯେ କି ଜବାହରଲାଲ ନେହେରୁଙ୍କର ଷ୍ଟେନୋ-ଟାଇପିଷ୍ଟ ଥିଲେ, କହିଛନ୍ତି ଯେ ୧୯୪୫ ମସିହା ଡିସେମ୍ବର ମାସ ୨୬ ତାରିଖରେ ନେହେରୁ ତାଙ୍କଦ୍ୱାରା ଗୋଟିଏ ଚିଠି ଟାଇପ୍ କରାଇ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କୁ ଲେଖିଥିଲେ ଯାହା କି ନିମ୍ନରେ ପ୍ରଦତ୍ତ କରାଗଲା ।

ପ୍ରିୟ ଶ୍ରୀ ଏଟ୍‌ଲି,

ବିଶ୍ୱସ୍ତ ସୂତ୍ରରୁ ମୁଁ ଜାଣିବାକୁ ପାଇଛି ଯେ ଆପଣମାନଙ୍କର ଯୁଦ୍ଧ ଅପରାଧୀ ସୁଭାଷ ଚନ୍ଦ୍ର ବୋଷଙ୍କୁ ଷ୍ଟାଲିନ୍ ଋଷିଆରେ ଆଶ୍ରୟ ଦେଇଛନ୍ତି । ଏହା ସ୍ପଷ୍ଟ ଭାବେ ଋଷିଆନ୍‌ମାନଙ୍କର ପ୍ରତାରଣା ଓ ବିଶ୍ୱାସଘାତକତାର ନମୁନା । ଋଷିଆ, ବ୍ରିଟେନ୍ ଓ ଆମେରିକା ସହ ମୈତ୍ରୀ ବନ୍ଧନରେ ଆବଦ୍ଧ । ତେଣୁ ଏ କାମ କରିବା ସେମାନଙ୍କର ଉଚିତ୍ ହୋଇନାହିଁ । ଦୟାକରି ଏହି କଥା ସ୍ମରଣ ରଖିବେ ଏବଂ ଆପଣ ଯାହା ଉପଯୁକ୍ତ ଓ କରଣୀୟ ବୋଲି ବିବେଚନା କରିବେ, ତାହା ହିଁ କରିବେ ।

ଆପଣଙ୍କର ବିଶ୍ୱସ୍ତ

ଜବାହରଲାଲ ନେହେରୁ

Dear Mr. Attlee,

I understand from a reliable source that Subhas Chandra Bose, your war criminal, has been allowed to enter the Russian territory by Stalin. This is clear treachery and betrayal of faith by the Russians. As Russia has been an ally of the British-

Americans, it should not have been done. Please take note of it and do what you consider proper and fit.

Yours sincerely

Jawaharlal Nehru

ଭାରତ ସରକାରଙ୍କ ଦ୍ୱାରା ଗଠିତ ଜଷ୍ଟିସ୍ ମୁଖାର୍ଜୀ କମିଶନ ଯେ କି ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ମୃତ୍ୟୁ ସଂପର୍କରେ ତଦନ୍ତ କରିଥିଲେ, ସେ ୨୦୦୫ ମସିହା ନଭେମ୍ବର ମାସ ୫ ତାରିଖରେ ତାଙ୍କ ରିପୋର୍ଟ ସରକାରଙ୍କୁ ପ୍ରଦାନ କରିଥିଲେ ଏବଂ ଏହି ରିପୋର୍ଟ ପାର୍ଲିଆମେଣ୍ଟରେ ୨୦୦୬ ମସିହା ମେ' ୧୭ ତାରିଖରେ ଉପସ୍ଥାପିତ ହୋଇଥିଲା । ଜଷ୍ଟିସ୍ ମୁଖାର୍ଜୀ ତାଙ୍କ ରିପୋର୍ଟରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି ଯେ ୧୯୪୫ ମସିହା ଅଗଷ୍ଟ ୧୮ ତାରିଖରେ ତାଇୱାନର ତାଇପେରେ କୌଣସି ବିମାନ ଦୁର୍ଘଟଣା ଘଟି ନ ଥିଲା । ତେଣୁ ଏହି ମନଗଢ଼ା ବିମାନ ଦୁର୍ଘଟଣାରେ ନେତାଜୀଙ୍କ ମୃତ୍ୟୁ ହୋଇଥିବା ସମ୍ପୂର୍ଣ୍ଣ ମିଥ୍ୟା । ଏହି ତଥ୍ୟକୁ ଆମେରିକା ସରକାର ମଧ୍ୟ ସ୍ୱୀକାର କରିଛନ୍ତି । ସେହିପରି ଜାପାନର ରେନ୍‌କୋଜୀ ମନ୍ଦିରରେ ଥିବା ଯେଉଁ ଚିତାଭସ୍ମକୁ ନେତାଜୀଙ୍କ ଚିତାଭସ୍ମ ବୋଲି କୁହାଯାଉଛି ତାହା ମଧ୍ୟ ମିଥ୍ୟା । ନେତାଜୀଙ୍କ ଜଣେ ଘନିଷ୍ଠ ସହଯୋଗୀ ସତ୍ୟେନ୍ଦ୍ର ନାରାୟଣ ସିହ୍ନା ଲେଖିଛନ୍ତି ଯେ ୧୯୬୦ ମସିହାରେ ସୋଭିଏତ୍ ନେତା ନିକିତା କ୍ରୁଶ୍ଚେଭ୍ କହିଥିଲେ ଯେ ନେତାଜୀଙ୍କୁ ସାଇବେରିଆରେ ରଖାଯାଇଛି ଏବଂ ନେହେରୁ ଚାହିଁଲେ ଆମେ ତାଙ୍କୁ ୪୫ ଦିନରେ ମୁକ୍ତ କରିଦେବୁ ।

୧୯୪୬ ମସିହା ଜାନୁଆରି ୧୧ ତାରିଖରେ ଗୌହାଟୀ ସହରରେ ଏକ ପ୍ରାର୍ଥନା ସଭାରେ ଗାନ୍ଧିଜୀ ପ୍ରକାଶ କରିଥିଲେ, "I do not think Subhas Bose is dead. He is hiding somewhere and would come in time." ଅର୍ଥାତ୍ "ମୁଁ ମନେ କରେ ନାହିଁ ଯେ ସୁଭାଷ ବୋଷ ମୃତ । ସେ କେଉଁଠାରେ ଆତ୍ମଗୋପନ କରିଅଛନ୍ତି । ସମୟ ହେଲେ ହିଁ ଆତ୍ମପ୍ରକାଶ କରିବେ ।"

ସେ ଯାହା ହେଉନା କାହିଁକି, ନେତାଜୀଙ୍କର ଅନ୍ତର୍ଦ୍ଧାନ ଭାରତବାସୀଙ୍କ ପାଇଁ ଅତ୍ୟନ୍ତ ଦୁଃଖଦ ଘଟଣା । ଦ୍ୱିତୀୟ ବିଶ୍ୱଯୁଦ୍ଧର ସମାପ୍ତି ପରେ ନେତାଜୀଙ୍କୁ ଯୁଦ୍ଧ ଅପରାଧୀ ଭାବରେ ଘୋଷଣା କରାଯାଇ ତାଙ୍କ ନାମରେ ଫୌଜଦାରି ମାମଲା ଦାଏର କରାଗଲା । କିନ୍ତୁ ଭାରତ ସରକାର ଏଭଳି କେଶ୍ ନେତାଜୀଙ୍କ ନାମରୁ ଉଠାଇବାକୁ ଜାତିସଂଘରେ କୌଣସି ଚେଷ୍ଟା କରିନଥିଲେ ।

ସୁଭାଷ ଚନ୍ଦ୍ର ବୋଷ ତାଇଓ୍ୱାନର ରାଜଧାନୀ ତାଇପେରେ ବିମାନ ଦୁର୍ଘଟଣାରେ ୧୯୪୫ ମସିହା ଅଗଷ୍ଟ ୧୮ ତାରିଖରେ ଆହତ ହୋଇ ସ୍ଥାନୀୟ ହସପିଟାଲରେ ଚିକିତ୍ସିତ ହେଉଥିବା ଅବସ୍ଥାରେ ମୃତ୍ୟୁବରଣ କରିଥିଲେ ବୋଲି ସରକାରୀ ଭାବେ ଘୋଷଣା କରାଯାଇଥିଲେ ମଧ୍ୟ ଭାରତବାସୀ ତଥା ବିଶ୍ୱର ଅଧିକାଂଶ ଦେଶର ବୁଦ୍ଧିଜୀବୀମାନେ ଏହି ମୃତ୍ୟୁ ସମ୍ବାଦକୁ ଅବିଶ୍ୱାସ କରିଛନ୍ତି । ନେତାଜୀ ସୁଭାଷ ବୋଷଙ୍କର ପ୍ରକୃତରେ କେଉଁ ପରିସ୍ଥିତିରେ, କେଉଁ ସ୍ଥାନରେ, କେଉଁ ଦେଶରେ ସ୍ୱର୍ଗାରୋହଣ ହେଲା, ତାହା ଆଜିଯାଏ ରହସ୍ୟାବୃତ୍ତ ହୋଇ ରହିଛି କିନ୍ତୁ ସମୟ ଆସିବ ଯେ ପ୍ରକୃତ ସତ୍ୟ ଦିନେ ନା ଦିନେ ଉନ୍ମୋଚିତ ହେବ ।

## ଆଜାଦ୍ ହିନ୍ଦ୍ ଫୌଜଙ୍କର ଲାଲକିଲ୍ଲାରେ ବିଚାର

କର୍ଣ୍ଣେଲ ପ୍ରେମ ସେହଗଲଙ୍କ ନେତୃତ୍ୱାଧୀନ ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟମାନେ ୧୯୪୫ ମସିହା ଏପ୍ରିଲ ୨୫ ତାରିଖରେ ବ୍ରିଟିଶ୍ ଅଧୀନସ୍ଥ ଗୋର୍ଖା ରେଜିମେଣ୍ଟର ସୈନ୍ୟମାନଙ୍କ ପାଖରେ ଆତ୍ମସମର୍ପଣ କଲେ ।  କ୍ୟାପଟେନ୍ ଲକ୍ଷ୍ମୀ ସେହଗଲ ବ୍ରିଟିଶ୍ ସୈନ୍ୟବାହିନୀରେ କାର୍ଯ୍ୟ କରୁଥିବା ବର୍ମାର କରେନ ଗରିଲାଙ୍କ ଦ୍ୱାରା ଧରାହୋଇ ଇଂରେଜ ବାହିନୀ ଦ୍ୱାରା ବନ୍ଦୀ ହେଲେ । ସେ ଯାହା ହେଉନା କାହିଁକି, ନେତାଜୀଙ୍କର ଅନ୍ତର୍ଦ୍ଧାନ ଭାରତବାସୀଙ୍କ ପାଇଁ ଅତ୍ୟନ୍ତ ଦୁଃଖଦ ଘଟଣା । ଦ୍ୱିତୀୟ ବିଶ୍ୱଯୁଦ୍ଧର ସମାପ୍ତି  ଜାପାନ ଓ ଜର୍ମାନୀର ଆତ୍ମସମର୍ପଣ ପରେ ଇଂରେଜ ସରକାର ଆଜାଦ୍ ହିନ୍ଦ୍ ଫୌଜର ଅଫିସର ଓ ସୈନ୍ୟମାନଙ୍କୁ ବନ୍ଦୀ କରି ସେମାନଙ୍କ ବିରୁଦ୍ଧରେ ବିଶ୍ୱାସଘାତକତା, ପ୍ରତାରଣା ଏବଂ ଇଂରେଜ ସମ୍ରାଟଙ୍କ ବିରୁଦ୍ଧରେ ଯୁଦ୍ଧରେ ଲିପ୍ତ ଥିବାର ଅଭିଯୋଗମାନ ଆଣିଥିଲେ । ଇଂରେଜ ବାହିନୀଦ୍ୱାରା ଆଜାଦ୍ ହିନ୍ଦ୍ ଫୌଜର ୧୭,୦୦୦ ଅଫିସର ଓ ସୈନ୍ୟମାନଙ୍କୁ ବନ୍ଦୀ କରି ଦିଲ୍ଲୀ ଅଣାଯାଇ ଲାଲକିଲ୍ଲା ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ରଖାଯାଇ ସେମାନଙ୍କୁ ସାମରିକ ଆଇନ୍ ପରିସରଭୁକ୍ତ କରାଯାଇ ସେମାନଙ୍କର ବିଚାର ଆରମ୍ଭ କରାଗଲା । ପ୍ରଥମ ଦଳରେ ଜେନେରାଲ ଶାହାନବାଜ ଖାଁ, କର୍ଣ୍ଣେଲ ପ୍ରେମ ସେହଗଲ, କର୍ଣ୍ଣେଲ ଗୁରୁବକ୍ସ ସିଂହ ଧିଲନ; ଦ୍ୱିତୀୟରେ କ୍ୟାପଟେନ ଅବଦୁଲ ରସିଦ୍, ସୁବେଦାର ସିଂଗରା ସିଂହ ଏବଂ ଜମାଦାର ଫତେ ଖାଁଙ୍କ ବିରୁଦ୍ଧରେ ଇଂରେଜ ବାହିନୀର ଯେଉଁ ସୈନ୍ୟମାନେ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗ ଦେବାକୁ ମନା କରିଥିଲେ ସେମାନଙ୍କ ପ୍ରତି ନୃଶଂସ ଆଚରଣ କରିଥିବା ଅଭିଯୋଗରେ ଓ କ୍ୟାପଟେନ ବୁରାନୁଦ୍ଦିନଙ୍କୁ ହତ୍ୟା ଅଭିଯୋଗରେ ଲାଲକିଲ୍ଲାରେ ବିଚାରର ସମ୍ମୁଖୀନ ହେବାକୁ ଅଣାଯାଇଥିଲା । ୧୯୪୫ ମସିହା ନଭେମ୍ବର ୫ ତାରିଖରେ ଏମାନଙ୍କର ବିଚାର ଆରମ୍ଭ

ହେବାକଥା ସାରା ଭାରତବର୍ଷରେ ଚାଞ୍ଚଲ୍ୟ ଖେଳାଇ ଦେଇଥିଲା । ହିନ୍ଦୁ, ମୁସଲିମ୍, ଶିଖ୍, ଖ୍ରୀଷ୍ଟିଆନ ଭେଦଭାବ ଭୁଲି ଦେଶର ସ୍ୱାଧୀନତା ପାଇଁ ଲଢ଼ି ଅସୀମ ତ୍ୟାଗ କରିଥିବା ଏହି ସୈନ୍ୟମାନଙ୍କ ସପକ୍ଷରେ ଦେଶରେ ସହାନୁଭୂତିର ଲହରୀ ଖେଳିଯାଇଥିଲା । ଆଜାଦ୍ ହିନ୍ଦ୍ ଫୌଜଙ୍କ ସପକ୍ଷରେ ସାରାଦେଶ ଏକଜୁଟ ହୋଇଯାଇଥିଲା । ସମସ୍ତେ ଜାଣିଥିଲେ, ଏହି ବିଚାରରେ ସମସ୍ତଙ୍କୁ ମୃତ୍ୟୁ ଦଣ୍ଡ ଦିଆଯିବ । ଦେଶବାସୀ ଆଜାଦ୍ ହିନ୍ଦ୍ ଫୌଜର ତ୍ୟାଗ, ଅସୀମ ବୀରତ୍ୱ ସହିତ ଲଢ଼ାଇର ଖବରମାନ ଧୀରେ ଧୀରେ ଜାଣିବାକୁ ପାଇଲେ, ଯାହା ତାଙ୍କୁ ଉତ୍ତ୍ୟକ୍ତ କରିଦେଲା । ମହାତ୍ମା ଗାନ୍ଧି ଟିପ୍ପଣୀ ଦେଇଥିଲେ ଯେ କେବଳ ସାଧାରଣ ଜନତା ନୁହନ୍ତି ସୈନ୍ୟବାହିନୀରେ ମଧ୍ୟ ନୂଆ ରାଜନୈତିକ ଚିନ୍ତାଧାରା ଜାଗ୍ରତ ହୋଇଥିଲା । ସୈନ୍ୟବାହିନୀର କେତେକ ରେଜିମେଣ୍ଟରେ, ବିମାନ ବାହିନୀର ଘାଟୀମାନଙ୍କରେ ହରତାଳମାନ ଆରମ୍ଭ ହୋଇଯାଇଥିଲା ।

୧୯୪୬ ମସିହା ଫେବ୍ରୁଆରି ୧୦ ତାରିଖରେ 'ରୟାଲ ଇଣ୍ଡିଆନ୍ ନାଭି'ରେ ବିଦ୍ରୋହ ଦେଖାଦେଇଥିଲା । ବିଦ୍ରୋହୀମାନେ ବମ୍ବେ, କଲିକତା, କରାଚୀ ଏବଂ ଅନ୍ୟାନ୍ୟ ବନ୍ଦରମାନଙ୍କରେ ଆଜାଦ୍ ହିନ୍ଦ୍ ଫୌଜର ଅଫିସର ଓ ସୈନ୍ୟମାନଙ୍କୁ ଖଲାସ କରିବାକୁ ଦାବି କରିଥିଲେ । କେବଳ ବମ୍ବେ ସହରରେ ବିଦ୍ରୋହୀ ଓ ସରକାରୀ ସୈନ୍ୟମାନଙ୍କ ମଧ୍ୟରେ



ଇନ୍ଦିରା, ଜବାହରଲାଲଙ୍କ ସହ ସୁଭାଷ

ହୋଇଥିବା ସଂଘର୍ଷରେ ୩୦୦ ବ୍ୟକ୍ତି ମୃତ୍ୟୁବରଣ କରିଥିଲେ ଓ ୧୫୦୦ ଆହତ ହୋଇଥିଲେ । ଲାଲକିଲ୍ଲାରେ ବିଚାର ଆରମ୍ଭ ହେବାଦିନ ଆଜାଦ୍ ହିନ୍ଦ୍ ସୈନ୍ୟମାନଙ୍କ ତରଫରୁ ଲଢ଼ିବାପାଇଁ ବିଶିଷ୍ଟ ଆଇନଜୀବୀ ବୁଲାଭାଇ ଦେଶାଇ, ସାର୍ ତେଜବାହାଦୁର୍ ସାପ୍ରୁ, ଡକ୍ଟର କୈଳାସ ନାଥ କାଟ୍‌ଜୁ, ପୂର୍ବତନ ବିଚାରପତି ଅରଚୁରାମ (ପି.କେ. ସେହଗଲଙ୍କ ପିତା), ପଣ୍ଡିତ ଜବାହରଲାଲ ନେହେରୁ ପ୍ରମୁଖ ସାମରିକ ବିଚାରାଳୟରେ ଉପସ୍ଥିତ ଥିଲେ । ବୁଲାଭାଇ ଦେଶାଇ ଦୃଢ଼ ସ୍ୱରରେ କହିଥିଲେ ଯେ, ବିଦେଶୀ ଶାସକଙ୍କ ବିରୁଦ୍ଧରେ ସଂଗ୍ରାମ କରି ନିଜକୁ ମୁକ୍ତ କରିବାର ଅଧିକାର ଗୋଟିଏ ପରାଧୀନ ଦେଶର ନାଗରିକମାନଙ୍କର ଅଛି ।

ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଦ୍ୱାରା ଗଠିତ ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟବାହିନୀ ଅସ୍ଥାୟୀ ସ୍ୱାଧୀନ ଭାରତ ସରକାରର ସରକାରୀ ଫୌଜ । ଅସ୍ଥାୟୀ ସ୍ୱାଧୀନ ଭାରତ ସରକାର ନିଜର ମୁଦ୍ରା ଓ ଡାକଟିକଟ ପ୍ରଚଳନ କରିଥିଲା ଏବଂ ଯେଉଁ ଭାରତୀୟ ଅଞ୍ଚଳ ଦଖଲ କରିଥିଲା ସେଠାରେ ନିଜର ଶାସନ ପ୍ରତିଷ୍ଠା କରିଥିଲା । ସର୍ବୋପରି ଅସ୍ଥାୟୀ ସ୍ୱାଧୀନ ଭାରତ ସରକାରକୁ ଅନେକ ସାର୍ବଭୌମ ଦେଶ ନିଜର ସ୍ୱୀକୃତି ପ୍ରଦାନ କରିଥିଲେ । ଆଜାଦ୍ ହିନ୍ଦ୍ ସରକାରର ସେନାବାହିନୀ ଅଫିସରମାନଙ୍କୁ କୋର୍ଟ ମାର୍ଶାଲ କରିବା ଅଧିକାର ଇଂରେଜ ସରକାରର ନାହିଁ । ବ୍ରିଟିଶ୍ କମାଣ୍ଡରମାନେ ତାଙ୍କ ବିଚାରରେ ଆଜାଦ୍ ହିନ୍ଦ୍ ସେନାବାହିନୀର ଅଫିସରମାନଙ୍କୁ ଦୋଷୀ ସାବ୍ୟସ୍ତ କରିଥିଲେ ମଧ୍ୟ ଇଂରେଜ ସରକାର ୧୯୪୬ ମସିହା ଜାନୁଆରି ୨ ତାରିଖରେ ସମସ୍ତଙ୍କୁ ମୁକ୍ତ କରିଦେଲେ । ଇଂରେଜ ସରକାର ହୃଦୟଙ୍ଗମ କଲେ ଯେ ଯେଉଁ ଭାରତୀୟ ସେନା ଉପରେ ନିର୍ଭର କରି ଇଂରେଜ ଜାତି ଭାରତ ଶାସନ କରୁଛି ସେମାନଙ୍କ ଉପରେ ଆଉ ବିଶ୍ୱାସ କରାଯାଇପାରିବ ନାହିଁ । ଆଜାଦ୍ ହିନ୍ଦ୍ ଫୌଜର ରାମସିଂହ ଠାକୁରଙ୍କ ଦ୍ୱାରା ରଚିତ ଦେଶାତ୍ମବୋଧକ ସଙ୍ଗୀତ—

'କଦମ୍ କଦମ୍ ବଢ଼ାଏ ଯା, ଖୁସି କେ ଗୀତ ଗାଏ ଯା ।
ୟହ ଜିନ୍ଦଗୀ ହେ କୌମକୀ, କୌମ ପେ ଲୁଟାଏ ଯା ।
ତୁ ଶେରେ ହିନ୍ଦ୍ ଆଗେ ବଢ଼, ମରନେ ସେ ଫିରଭି ତୁ ନ ଡର ।
ଯୋ ତେରେ ସାମନେ ଆ ଅକଡ଼େ ତୋ, ଖାକ୍‌ମେ ମିଲାୟେ ଯା ।

ସେହିଦିନଠାରୁ ଅଦ୍ୟାବଧି ଭାରତର ସମସ୍ତ ସୈନ୍ୟବାହିନୀରେ ଏହି ଗୀତ ଚଳିଆସୁଅଛି ।

# ଉପସଂହାର

କ୍ଷମତା ଲୋଭରେ ତିଳେମାତ୍ର ଆସକ୍ତି ନରଖି ଯେଉଁ ଦୁଇଜଣ ବ୍ୟକ୍ତି ଭାରତର ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ, ସେମାନେ ହେଲେ ମୋହନ ଦାସ କରମଚାନ୍ଦ ଗାନ୍ଧି ଓ ନେତାଜୀ ସୁଭାଷ ଚନ୍ଦ୍ର ବୋଷ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଦୁର୍ଲ୍ଲଭ ଆଇ.ସି.ଏସ୍. ଚାକିରିର ସମସ୍ତ ପ୍ରତିପତ୍ତି, ଭୋଗବିଳାସକୁ ତୁଚ୍ଛ କରିଦେଇ ଭାରତର ସ୍ୱାଧୀନତାପାଇଁ ଯେଉଁଭଳି ଦୁଃଖ ଯନ୍ତ୍ରଣାର ସମ୍ମୁଖୀନ ହେଲେ ତାହା ଅବର୍ଣ୍ଣନୀୟ । ନିଜର ପ୍ରଚଣ୍ଡ ମେଧାଶକ୍ତି ବଳରେ ସେ ଭାରତବର୍ଷ କିଭଳି ସ୍ୱାଧୀନ ହେବ ଓ ସ୍ୱାଧୀନତୋତ୍ତର ଭାରତରେ ପ୍ରତ୍ୟେକ ଭାରତୀୟଙ୍କର କିଭଳି ସର୍ବାଙ୍ଗୀନ ଉନ୍ନତି ହେବ ତାହାର ଯୋଜନା ପ୍ରସ୍ତୁତ କରିସାରିଥିଲେ । ହିନ୍ଦୁ, ମୁସଲମାନ, ଶିଖ୍, ଇଶାଇ ସମସ୍ତଙ୍କୁ ସେ ଏକତ୍ରିତ କରାଇ ଦେଶପ୍ରୀତିରେ ଉଦ୍‌ବୁଦ୍ଧ କରିପାରିଥିଲେ । ତାଙ୍କ ନାଁକୁ ଶୁଣିଲେ ପ୍ରତ୍ୟେକ ଭାରତୀୟର ହୃଦୟରେ ସ୍ୱାଧୀନତା ପୂର୍ବରୁ ଯେଉଁଭଳି ସ୍ପନ୍ଦନ ଖେଳିଯାଉଥିଲା, ସ୍ୱାଧୀନତା ପରେ ମଧ୍ୟ ତାଙ୍କ ଅବର୍ତ୍ତମାନରେ ଆଜି ତାଙ୍କ ଆଦର୍ଶ ସମସ୍ତ ଭାରତୀୟଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରୁଛି ।

ନେତାଜୀ ସାମ୍ୟବାଦ ଚିନ୍ତାଧାରାରେ ବିଶ୍ୱାସୀ ଥିଲେ । ଚାଷୀ ଓ ଚାଷକୁ ସେ ପ୍ରାଧାନ୍ୟ ଦେବାର ସପକ୍ଷରେ ଥିଲେ । ଶିଳ୍ପର ପ୍ରତିଷ୍ଠାରେ ଶିଳ୍ପୋଦ୍ୟୋଗୀ ଓ ଶ୍ରମିକମାନେ ସମଭାଗିଦାର ହୁଅନ୍ତୁ ବୋଲି ସେ ବିଶ୍ୱାସ ରଖିଥିଲେ । ସାଂପ୍ରଦାୟିକ ଭେଦଭାବ ଦୂର କରିବାକୁ ସେ ନିଜେ ପ୍ରଚେଷ୍ଟା ଆରମ୍ଭ କରି ସେଥିରେ ସଂପୂର୍ଣ୍ଣ ରୂପେ ସଫଳ ହୋଇଥିଲେ । କଲିକତା କର୍ପୋରେସନରେ ହେଉ କିମ୍ବା ଆଜାଦ୍ ହିନ୍ଦ୍ ଫୌଜରେ ହେଉ, ସେ ମୁସଲମାନ ସଂପ୍ରଦାୟର ଯୋଗ୍ୟ ବ୍ୟକ୍ତିମାନଙ୍କୁ ତାଙ୍କର ସହଯୋଗୀ ଭାବେ ବିଭିନ୍ନ ପଦପଦବୀରେ ଅବସ୍ଥାପିତ କରି ସେମାନଙ୍କର ବିଶ୍ୱାସଭାଜନ ହୋଇପାରିଥିଲେ । ନେତାଜୀ ବଞ୍ଚିଥିଲେ କେବେ ଭାରତ ଦୁଇ ଭାଗ ହୋଇନଥାନ୍ତା । ଭାରତବର୍ଷକୁ ଐକ୍ୟବଦ୍ଧ କରିବାର ଶକ୍ତି କେବଳ ସୁଭାଷ ବୋଷଙ୍କର ଥିଲା । ପୂର୍ବ ଏସିଆରେ ୩୦ ଲକ୍ଷ ଭାରତୀୟଙ୍କୁ ଭାଷା, ଜାତି, ଧର୍ମ ନିର୍ବିଶେଷରେ ସେ ଯେଉଁଭଳି ଭାବରେ ଏକଜୁଟ୍ କରାଇପାରିଥିଲେ ତାହାର ପଟ୍ଟାନ୍ତର ନାହିଁ । ମହିଳାମାନଙ୍କ ପାଇଁ ତାଙ୍କର ବିଶେଷ ସମ୍ମାନ ଥିଲା । କ୍ୟାପଟେନ୍ ଲକ୍ଷ୍ମୀ ସେହଗଲଙ୍କ ନେତୃତ୍ୱରେ ରାଣୀ ଲକ୍ଷ୍ମୀବାଈ ରେଜିମେଣ୍ଟ ପ୍ରତିଷ୍ଠା କରି ସେ ତାହା ପ୍ରମାଣ କରିଦେଇଯାଇଛନ୍ତି । ପୁରୁଷ ଓ ମହିଳା ଉଭୟ ସମାନ ସୁବିଧା ସୁଯୋଗ ପାଇବାର ଦୃଷ୍ଟାନ୍ତ ସେ ସୃଷ୍ଟି କରିଛନ୍ତି । ହିନ୍ଦୀ ଭାରତର ଜାତୀୟ ଭାଷା ହେବାର ପ୍ରୟୋଜନୀୟତା ଉପରେ ନେତାଜୀ ଦୃଢ଼ ମତ ବ୍ୟକ୍ତ କରିଥିଲେ । ଆଜାଦ୍ ହିନ୍ଦ୍ ଫୌଜରେ ପ୍ରତି ନିର୍ଦ୍ଦେଶ ହିନ୍ଦୀ ଭାଷାରେ ଦିଆଯାଉଥିଲା । ପରସ୍ପର

ଭିତରେ କଥାବାର୍ତ୍ତା ହିନ୍ଦୀ ଭାଷାରେ ହେଉଥିଲା । ଆଜାଦ୍ ହିନ୍ଦ୍ ଫୌଜରେ ଯୋଗ ଦେଉଥିବା ପ୍ରତ୍ୟେକ ବ୍ୟକ୍ତିକୁ ହିନ୍ଦୀ ଭାଷାରେ ତିନିମାସିଆ ଏକ ସଂକ୍ଷିପ୍ତ ପାଠ୍ୟକ୍ରମ ସଂପୂର୍ଣ୍ଣ କରିବା ବାଧ୍ୟତାମୂଳକ ଥିଲା । ତାଙ୍କ ଭଳି ସର୍ବଗୁଣସମ୍ପନ୍ନ ଏକ ନିରହଂକାରୀ, ଉଦାର ମନୋଭାବ, ଦେଶପ୍ରେମୀ ବ୍ୟକ୍ତି ବିଶ୍ୱରେ ବିରଳ । ତାଙ୍କ ନାମ ଯୁଗେ ଯୁଗେ ପୃଥିବୀର ଦୁଃସାହସୀ ବୀରଙ୍କ ତାଲିକାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ । ତାଙ୍କ ବୀରତ୍ୱ ଆଲେକଜାଣ୍ଡାର, ସାମୁରାଇ, ୟୁଲିସେସ୍, ନେପୋଲିଅନଙ୍କ ସହିତ ତୁଳନୀୟ । ସେ ଅଜୟ, ଅମର, ଚିର ନମସ୍ୟ ଓ ମୃତ୍ୟୁଂଜୟୀ ।



ଭାଇ ସୁଧୀର ଚନ୍ଦ୍ର ବୋଷ ଓ ତାଙ୍କ ପତ୍ନୀଙ୍କ ସହ ନେତାଜୀ (୧୯୩୯)

# ନେତାଜୀଙ୍କର ଅମ୍ଳାନ ବାଣୀ

(୧) ଯେପରି ବିଶ୍ୱକୁ ଆଲୋକିତ କରିବା ପାଇଁ ସୂର୍ଯ୍ୟଙ୍କର ଉଦୟନ, ପରିବେଶକୁ ମଧୁରିତ ତଥା ମହକିତ କରିବା ପାଇଁ ପୁଷ୍ପର ପ୍ରସ୍ଫୁଟନ, ସାଗରକୁ ବିପୁଳ ଜଳରାଶିରେ ଉଦ୍‌ବେଳିତ କରିବା ପାଇଁ ନିର୍ଝରିଣୀର ନିର୍ଝରଣ, ସେହିପରି କୌଣସି ଏକ ମହାନ୍ ସତ୍ୟର ପ୍ରତିଷ୍ଠା ପାଇଁ ଆମ ଭିତରେ ଆନନ୍ଦମୟ ଜୀବନ ତଥା ଯୌବନର ଯେ ଉଷରତା ନିତ୍ୟ ପ୍ରତୀତ, ତାହା ପ୍ରତ୍ୟେକେ ଉପଲବ୍ଧି କରିବା ଉଚିତ ।

(୨) ଆମେ ସବୁ ଯୁବକ । ଯୁବକତ୍ୱ ହିଁ ଆମର ପ୍ରକୃତ ଧର୍ମ । ଅନ୍ୟ କୌଣସି ତଥାକଥିତ ଧର୍ମକୁ ଗ୍ରହଣ କରିବାକୁ ଆମେ ପ୍ରସ୍ତୁତ ନୋହୁଁ । ଈଶ୍ୱର ଆମ ଭିତରେ ଅମାପ ଆଶା, ଅବାଧ ଆଗ୍ରହ, ଅସରନ୍ତି ଧୈର୍ଯ୍ୟ ଭରିଦେଇଛନ୍ତି । ଆମ ଭିତରେ ଥିବା ଜୀବନର ଉର୍ଦ୍ଧ୍ୱଗତିକୁ ବିଶ୍ୱର କୌଣସି ଶକ୍ତି ପ୍ରତିହତ କରିପାରିବ ନାହିଁ । ଆମେ ଯୁବକ ଆମେ ଉତ୍ତାନପାଦ ।

(୩) ଆମେ ଯୁବକ, ଶାନ୍ତିର ମହାବାଣୀ ପ୍ରଚାର କରିବା ଆମର କାମ ନୁହେଁ । ଆମେ ବିପ୍ଳବର ପ୍ରଖ୍ୟାପକ । ଆମ ଭିତରେ ଥିବା ଅନୀତି, ଦୁର୍ନୀତି, ସଂକୀର୍ଣ୍ଣତା, ଅନ୍ଧବିଶ୍ୱାସର ମୂଳୋତ୍ପାଟନ ଆମେ କରିବୁ । ସ୍ୱାଧୀନତା ପଥର ସମସ୍ତ ପ୍ରତିବନ୍ଧକକୁ ଆମେ ଦୂର କରିଦେଇ ପାରିଲେ ମୁକ୍ତିପଥର ସୈନିକମାନେ ଅବାଧରେ ଅଗ୍ରଗତି କରିପାରିବେ ।

(୪) ଶିଶୁର କ୍ରନ୍ଦନ ହେଉଛି ସାଂସାରିକ ବାଧାବନ୍ଧନ ବିରୁଦ୍ଧରେ ପ୍ରତିବାଦ । କ୍ରନ୍ଦନ ହିଁ ଶିଶୁର ବଳ । ଆତ୍ମଶକ୍ତି ହିଁ ଯୁବକର ବଳ । ତା'ରି ମାଧ୍ୟମରେ ସେ ସମସ୍ତ ବାଧାବନ୍ଧନକୁ ଛିନ୍ନ କରିଦେଇପାରିବ ।

(୫) ମନୁଷ୍ୟ ଜୀବନ ଏକ ମହାନ୍ ସତ୍ୟ । ମୁକ୍ତିହିଁ ତା'ର ଧ୍ୟେୟ । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ମୁକ୍ତିର ମନ୍ତ୍ର ପ୍ରଚାର କରିବାକୁ ଆମେ ଅଭିପ୍ରେତ । ସାମାଜିକ, ଆଧ୍ୟାତ୍ମିକ, ଆର୍ଥନୀତିକ ଏବଂ ରାଜନୈତିକ—ଏ ପ୍ରତ୍ୟେକ ସ୍ତରରେ ଆମକୁ ସତ୍ୟ ଆନନ୍ଦ ତଥା ଅନ୍ତର୍ଦୃଷ୍ଟିର ଆଲୋକ ବିଚ୍ଛୁରିତ କରିବାକୁ ହେବ ।

(୬) ଭାରତର ନୂତନ ଜାଗ୍ରତ ଆତ୍ମା ମୁକ୍ତି ପାଇଁ କ୍ରନ୍ଦନ କରୁଛି । ଚାଲ, ଆମେ ସମସ୍ତେ ଭ୍ରାତୃତ୍ୱର ବନ୍ଧନରେ ଆବଦ୍ଧ ହୋଇ ଭାରତର ମୁକ୍ତି ଏବଂ ତା'ର ଅତୀତର ମହାନ୍ ପରମ୍ପରା ଓ ସଂସ୍କୃତିର ସୁରକ୍ଷା ପାଇଁ ଶପଥ ନେବା ।

(୭) ଯେପରି ମନୁଷ୍ୟ ପୁନର୍ଜନ୍ମର ଅଧିକାରୀ ହୁଏ, ସେହିପରି କୌଣସି ଜାତିର ମୃତ୍ୟୁ ହେଲେ ସେ ପୁଣି ନୂତନ ଜୀବନର ଅଧିକାରୀ ହୁଏ । ତେବେ ବ୍ୟକ୍ତି ଓ ଜାତିର ଭିତରେ ଗୋଟାଏ ବଡ଼ ପ୍ରଭେଦ ଅଛି—ପ୍ରତ୍ୟେକ ଜାତି ମୃତ୍ୟୁପରେ ପୁନର୍ଜନ୍ମ ପାଇପାରନ୍ତି ନାହିଁ ।

(୮) ଭାରତୀୟ ସଭ୍ୟତା ତଥା ସଂସ୍କୃତି ଭିତରେ ଏପରି କିଛି ମହାନ୍ ଆଲୋକ ଅଛି, ଯାହା ମାନବସଭ୍ୟତାର ଅସ୍ତିତ୍ୱ ରକ୍ଷାପାଇଁ ଅପରିହାର୍ଯ୍ୟ । ବହୁ ବିପର୍ଯ୍ୟୟ ଭିତରେ ମଧ୍ୟ ଭାରତର ମୁନିଋଷିମାନେ ଯୁଗ-ଯୁଗର ଅନ୍ଧକାର ମଧ୍ୟରେ ସେହି ଜ୍ଞାନାଲୋକକୁ ପ୍ରଜ୍ୱଳିତ କରି ରଖିଛନ୍ତି ।

(୯) ମଣିଷ ମୃତ୍ୟୁଶୀଳ; କିନ୍ତୁ ତା'ର ଆତ୍ମା ଅବିନାଶୀ । ଗୋଟିଏ ଜାତିପାଇଁ ମଧ୍ୟ ଏହି ସତ୍ୟ ଅଲଙ୍ଘନୀୟ । କୌଣସି ଜାତିର ମୃତ୍ୟୁ ହେଲେ ମଧ୍ୟ ତା'ର ଆତ୍ମା ସେ ଜାତିର ସଭ୍ୟତା, ସଂସ୍କୃତି ତଥା ପରମ୍ପରା ରୂପରେ ବଞ୍ଚିରହେ ।

(୧୦) ପୃଥିବୀର ପ୍ରତ୍ୟେକ ବିରାଟ ସଫଳତା ହେଉଛି ବ୍ୟକ୍ତିର ନିଜ ଉପରେ ତଥା ନିଜର ସୃଜନୀଶକ୍ତି ଉପରେ ଏକାନ୍ତ ବିଶ୍ୱାସର ଫଳ । ଯାହାର ନିଜ ଉପରେ କିମ୍ବା ନିଜ ଜାତି ଉପରେ ବିଶ୍ୱାସ ନାହିଁ, ସେ ସୃଷ୍ଟିକ୍ଷମ ନୁହେଁ ।

(୧୧) ଯେଉଁ ଜାତି ଆଦର୍ଶର ଆତ୍ମଶକ୍ତିରେ ଶକ୍ତିମାନ, ଯେତେ ଦୁଃଖ-ଯନ୍ତ୍ରଣା ଭୋଗ କରିବାକୁ ପଡୁ ନା କାହିଁକି, ଆଦର୍ଶର ପ୍ରତିଷ୍ଠା ପାଇଁ ଆନନ୍ଦର ସହିତ ସେ ତା'ର ସମ୍ମୁଖୀନ ହୋଇଥାଏ ।

(୧୨) ପ୍ରତ୍ୟେକଙ୍କ ଭିତରେ ଆନନ୍ଦର ଏକ ଶାଶ୍ୱତ ଉତ୍ସ ନିହିତ ଅଛି । ଯାତନା ଭିତରେ ଯନ୍ତ୍ରଣା ଥିଲେ ମଧ୍ୟ ଆନନ୍ଦର ଶାଶ୍ୱତିମା ତା' ଭିତରେ ପ୍ରଚ୍ଛନ୍ନ ଭାବରେ ରହିଛି । ଏହାର ସ୍ୱାଦୁ ଯେ ଜୀବନରେ ଥରେ ଚାଖିଛି, ସେ ଜର୍ଜରିତ ହେବା ପରିବର୍ତ୍ତେ ଅଧିକ ଶକ୍ତିଶାଳୀ ଓ ମହାନ୍ ହେବାର ସୁଯୋଗ ପାଇଥାଏ । ଯନ୍ତ୍ରଣା ହିଁ ଆପେ ଆନନ୍ଦରେ ରୂପାନ୍ତରିତ ହୁଏ ।

(୧୩) କୌଣସି ଏକ ଆଦର୍ଶର ପରିପୂର୍ତ୍ତି ପାଇଁ ତୁମେ ଯେତେବେଳେ ଆତ୍ମୋତ୍ସର୍ଗ କରିବ, ସେତେବେଳେ ତୁମର ଆତ୍ମୋପଲବ୍ଧି ହେବ ଓ ଜୀବନର ରହସ୍ୟ ଯବନିକା ଅପସରିଯିବ ।

(୧୪) ନେତା ଶୂନ୍ୟରୁ ଖସନ୍ତି ନାହିଁ । କର୍ମପ୍ରବାହ ଭିତରୁ ନେତା ତିଆରି ହୁଅନ୍ତି । ଯେ କର୍ମୀ, ସେ ନେତୃତ୍ୱର ଶୂନ୍ୟତା ଅନୁଭବ କରେ ନାହିଁ ।

(୧୫) କୌଣସି ଜାତିର କେବଳ ବିଶିଷ୍ଟ ଲୋକମାନଙ୍କୁ ଦେଖି ସେ ଜାତିର ବଡ଼ପଣିଆକୁ ବିଚାରକୁ ନିଆଯାଏ ନାହିଁ; ରାସ୍ତାକଡ଼ ମଣିଷର ଅବସ୍ଥାକୁ ମଧ୍ୟ ବିଚାରକୁ ନେବାକୁ ହେବ ।


ବରଡୋଲା ଆଶ୍ରମରେ ସୁଭାଷ

(୧୬) ଯେଉଁ ଜାତିର ଲୋକମାନେ ପରିଭ୍ରମଣକୁ ଭଲପାଆନ୍ତି ନାହିଁ କିମ୍ବା ନିଜର ସଂକୀର୍ଣ୍ଣ ପରିସର ମଧ୍ୟରୁ ବାହାରକୁ ଯିବାକୁ ଚାହାନ୍ତି ନାହିଁ, ସେ ଜାତି କେବେହେଲେ ସମୃଦ୍ଧ ହୋଇପାରିବ ନାହିଁ । 'ମୁଁ ଏଇ ଦେଶରେ ଜନ୍ମ ହୋଇଛି ଏବଂ ଏଇ ମାଟିରେ ମରିବି ।'—ଏପ୍ରକାର ଆଦର୍ଶ ସ୍ପୃହଣୀୟ ନୁହେଁ; 'ମୁଁ ଅନନ୍ତ ପ୍ରକୃତିର ସନ୍ତାନ ଓ ଅନନ୍ତ ପ୍ରକୃତି ମୋତେ ଆହ୍ୱାନ ଜଣାଉଛି... ମୁଁ ତା'ରି କୋଳକୁ ଚାଲିଯିବି ।'—ବରଂ ଏପ୍ରକାର ମନୋଭାବ ସୃଷ୍ଟି ହେବା ଉଚିତ ।

(୧୭) ମଣିଷ ଜୀବନର ଅନେକ ଛୋଟ ଛୋଟ ଘଟଣାରୁ ତା'ର ବ୍ୟକ୍ତିତ୍ୱର ମହନୀୟତା ମପାଯାଇପାରେ ।

(୧୮) ଦୁଃଖ-ନିର୍ଯାତନା ନ ଭୋଗିଲେ ମଣିଷ ତା' ନିଜର ଆଦର୍ଶ ସହିତ ଆତ୍ମିକ ସମ୍ପର୍କ ସ୍ଥାପନ କରିପାରିବ ନାହିଁ । ସେ କେବଳ କଠିଣ ପରୀକ୍ଷାର ସମ୍ମୁଖୀନ ହେଲେ, ଅମାପ ଆତ୍ମଶକ୍ତିର ପରିଚୟ ପାଇପାରିବ ।

(୧୯) ପ୍ରତ୍ୟେକ ଦାନର ପ୍ରତିଦାନ ରହିବା ଉଚିତ; ନଚେତ୍ ଏହା ବ୍ୟକ୍ତିର ଆତ୍ମସମ୍ମାନ ଉପରେ ଆଞ୍ଚ ଆଣିବ ।

(୨୦) ରାଜନୈତିକ ଆନ୍ଦୋଳନ ଓ ନଦୀର ପ୍ରବାହ ଭିତରେ ବିଶେଷ ପ୍ରଭେଦ ନାହିଁ । ସମୟେ ସମୟେ ଏହା ଅତି ସ୍ୱଚ୍ଛ ଓ ଅନ୍ୟ ସମୟରେ ଏହା କର୍ଦ୍ଦମାକ୍ତ ହୋଇଥାଏ ।

(୨୧) କର୍ମ ମଣିଷର ବିଶୃଙ୍ଖଳାକୁ ଦମନ କରେ ଓ ତା'ର ବାହ୍ୟ ଆଚରଣକୁ ସଂଯମିତ କରେ; କିନ୍ତୁ ଅଧ୍ୟୟନ ତଥା ଧ୍ୟାନ ମଣିଷର ଆତ୍ମଶୃଙ୍ଖଳା ଦିଗରେ ସାହାଯ୍ୟ କରିଥାଏ ।

(୨୨) ପ୍ରେମ ମଣିଷର ହୃଦୟକୁ ପ୍ରସାରିତ କରେ ଓ ସମସ୍ତ ସଂକୀର୍ଣ୍ଣତାକୁ ପରିହାର କରି ବିଶ୍ୱର ବିସ୍ତୃତ ବଳୟରେ ନିମଜ୍ଜିତ କରେ ।

(୨୩) ମଣିଷ ତା' ଭାବନାର ରୂପକଳ୍ପ । ନିଜକୁ ଛୋଟ ବୋଲି ଭାବିଲେ ସେ ଛୋଟ ହୋଇଯାଏ ଓ ବଡ଼ ବୋଲି ଭାବିଲେ ବଡ଼ପଣିଆ ପ୍ରକାଶିତ ହୁଏ ।

(୨୪) ମଣିଷର ପଞ୍ଚେନ୍ଦ୍ରିୟ ହେଉଛି ପଞ୍ଚ ପ୍ରଦୀପ ଓ ଆଲୋକର ଉତ୍ସ । ଏହାରି ମାଧ୍ୟମରେ ମାତୃଶକ୍ତିର ଆରାଧନା କରିବା ଉଚିତ । ମାତୃଶକ୍ତିର ଆଧାର ଦେବୀଙ୍କ ପାଖରେ ପଶୁବଳି ଦେବାର ଅର୍ଥ ନିଜର ଭୋଗ-ଅଭିଳାଷକୁ ବଳି ଦେବା ବୁଝାଇଥାଏ । ପଶୁ ହିଁ ମଣିଷ ଭିତରର ପାଶବିକତାର ପ୍ରତୀକ ।

(୨୫) ପ୍ରତିଦିନ କିଛି ସମୟ ପାଇଁ ଧ୍ୟାନ କର । ଏହା ମନରେ ଶାନ୍ତି, ଶକ୍ତି ଓ ଆନନ୍ଦ ସୃଷ୍ଟି କରିପାରିବ ।

(୨୬) ମଣିଷ କେବଳ ତା'ର ଦୈନନ୍ଦିନ କର୍ତ୍ତବ୍ୟ ସମ୍ପାଦନରେ ପରିତୁଷ୍ଟ ହେବା ଉଚିତ ନୁହେଁ । ଆତ୍ମୋନ୍ନତି ପ୍ରତ୍ୟେକ କର୍ମର ନିହିତ ଉଦ୍ଦେଶ୍ୟ ।

(୨୭) ପାଠ୍ୟ ପୁସ୍ତକ ଉପରେ ଶିକ୍ଷାର ସଫଳତା ନିର୍ଭର କରେନାହିଁ । ଶିକ୍ଷକଙ୍କର ଉତ୍ତମ ଚରିତ୍ର ଓ ବ୍ୟକ୍ତିତ୍ୱ ଉପରେ ଏହା ମୁଖ୍ୟତଃ ନିର୍ଭର କରେ ।



ଭିକ୍ଟୋରିଆ ଷ୍ଟେସନ୍‌ରେ ନେତାଜୀଙ୍କୁ ଭବ୍ୟ ସମ୍ବର୍ଦ୍ଧନା

(୨୮) ସାଂସାରିକ ଆମୋଦ-ପ୍ରମୋଦ ତଥା ସୁଖ-ସମୃଦ୍ଧିକୁ ନେଇ ମଣିଷ ଜୀବନର ସଫଳତା ତଥା ବିଫଳତାକୁ ବିଚାର କରାଯାଏ ନାହିଁ । ମଣିଷ ଶାରୀରିକ ଶକ୍ତିକୁ ନେଇ ସଂଗ୍ରାମ କରେ ନାହିଁ କିମ୍ବା ଜୀବନସଂଗ୍ରାମ କେବଳ ପାର୍ଥିବତାର ଅଭିବୃଦ୍ଧି ପାଇଁ ଅଭିପ୍ରେତ ନୁହେଁ ।

(୨୯) ଏ ସଂସାରରେ ପ୍ରତ୍ୟେକ ବ୍ୟକ୍ତି ଭଲ ଓ ମନ୍ଦର ସମାହାର । କାହାପ୍ରତି ଶ୍ରଦ୍ଧା ପୋଷଣ କରିବାକୁ ହେଲେ ବା କାହାକୁ ଭଲପାଇବାକୁ ହେଲେ ତା'ର ସମସ୍ତ ଦୋଷଦୁର୍ବଳତା ସତ୍ତ୍ୱେ ତାକୁ ଭଲପାଇବାକୁ ପଡ଼ିବ ।

(୩୦) ଲୋକଶକ୍ତିକୁ କାମରେ ବିନିଯୋଗ କରିବାକୁ ହେଲେ ସେମାନଙ୍କୁ ରୁଚି ଅନୁକୂଳ କାମ ଯୋଗାଇଦେବା ଉଚିତ । କୌଣସି ନିର୍ଦ୍ଦିଷ୍ଟ ପ୍ରକାରର କାମକୁ ସବୁଲୋକ କରିପାରିବେ ନାହିଁ ।

(୩୧) କୌଣସି ଏକ ଲକ୍ଷ୍ୟ ସାଧନ ପାଇଁ ଦୁଃଖ ନିର୍ଯାତନା ଶେଷରେ ସଫଳତା ଏକ ପ୍ରସ୍ଫୁଟିତ ବର୍ଣ୍ଣାଭ ପୁଷ୍ପରେ ପରିଣତ ହୁଏ ।

(୩୨) ଆତଙ୍କବାଦ, ଅରାଜକତା, ବିଶୃଙ୍ଖଳା ଉପରେ ମୋର ବିଶ୍ୱାସ ନାହିଁ କିମ୍ବା ଭୟ ମଧ୍ୟ ନାହିଁ । ମଣିଷ ଭିତରେ ଥିବା ଦେବତ୍ୱ ଓ ମାନବିକ ମୌଳିକତା ନେଇ ମୁଁ ଆସ୍ଥାବାନ । 'ମନୁଷ୍ୟ ଭିତରେ ଦେବତ୍ୱ ନିହିତ ଅଛି'—ଆମର ଏ ଧାରଣାରେ ସତ୍ୟତା ଥିଲେ, ମନୁଷ୍ୟ କେବେହେଲେ ବିପଥଗାମୀ ହୋଇପାରିବ ନାହିଁ ।

(୩୩) ଭାରତର ସ୍ୱାଧୀନତା ପଥରେ ଦୃଢ଼ତାର ସହିତ ଆଗେଇଯାଅ । ତ୍ରୁଟି-ବିଚ୍ୟୁତି, ଭୁଲ-ଭ୍ରାନ୍ତିକୁ ଭୟ କରନାହିଁ । ଆମର ସ୍ୱାଧୀନତା ଲାଭ କରିବାର ଅଧିକାର ଭିତରେ ଭୁଲକରି ଶିଖିବାର ଅଧିକାର ମଧ୍ୟ ଅନ୍ତର୍ଭୁକ୍ତ ।

(୩୪) ହେ ଯୁବବନ୍ଧୁଗଣ ! ନିଜ ହୃଦୟରେ ସ୍ୱରାଜର ବର୍ତ୍ତିକା ପ୍ରଜ୍ୱଳିତ କରି ରଖ ଏବଂ ସେହି ଆଲୋକଶିଖାକୁ ନେଇ ପ୍ରତି ଘରେ ଘରେ ପହଞ୍ଚାଇଦିଅ । ଲୋକମାନଙ୍କର ହୃଦୟ ମୁକ୍ତିର ଆଲୋକରେ ଆଲୋକିତ ହେଉ ।

(୩୫) ବିଦେଶୀ ଶାସନର ନିର୍ଯାତନା ଆମେ ଭୋଗକଲେ ମଧ୍ୟ ସ୍ୱରାଜଲାଭ ପାଇଁ ଆମେ ଯେ ତା' ଭିତରେ ତାଲିମ ପାଉଛୁ, ଏଥିରେ ସନ୍ଦେହ ନାହିଁ ।

(୩୬) ମଣିଷ ଜୀବନରେ ଜାଗରଣ ସୃଷ୍ଟି ହେଲେ ତା' ସାରା ବ୍ୟକ୍ତିତ୍ୱର ସଂପ୍ରସାରଣ ଘଟିଥାଏ । ତା' ଜୀବନର ପ୍ରତ୍ୟେକ ସ୍ତରରେ ନବଜୀବନର ସଂଚାର ଅନୁଭୂତ ହୁଏ ।

(୩୭) ସ୍ୱାଧୀନତା ଲାଭ କରିବାର ଯୋଗ୍ୟତା ସ୍ୱରୂପ ମଣିଷ ପ୍ରଥମେ ତା' ନିଜକୁ ଜଣେ ସ୍ୱାଧୀନ ବ୍ୟକ୍ତି ବୋଲି ଭାବିବା ଉଚିତ । ସେ ସ୍ୱାଧୀନ ବୋଲି ଅନ୍ତରର ସହିତ ଅନୁଭବ କରିବା ଉଚିତ । ବଂଧନମୁକ୍ତ ହେବାହିଁ ମଣିଷଜୀବନର ଏକମାତ୍ର ଲକ୍ଷ୍ୟ ।

(୩୮) ସ୍ୱାଧୀନତାର ପଥ ସରଳ ନୁହେଁ । ଏହା ଅତ୍ୟନ୍ତ ଦୁର୍ଗମ ଓ ବିପଦସଂକୁଳ । ଏହାକୁ ଅତିକ୍ରମ କରିପାରିଲେ ମଣିଷ ଶାଶ୍ୱତ ଗୌରବର ଚରମ ଶିଖରରେ ପହଞ୍ଚି ପାରିବ ।

(୩୯) ବାର୍ଦ୍ଧକ୍ୟ ମଣିଷକୁ ବୃଦ୍ଧ କରି ଦେଇପାରେନା । ଯାହା ପାଖରେ ଅନ୍ତର୍ନିହିତ ଯୁବସୁଲଭ ସରସତା ଅଛି, ସେ ବୃଦ୍ଧି ହେଲେ ବି ଯୁବକ ଓ ଯାହା ପାଖରେ ଏହା ନାହିଁ ସେ ତରୁଣ ଯୁବକ ହେଲେ ବି ବୃଦ୍ଧ ।



ଜାପାନର ସ୍ୱରାଷ୍ଟ୍ର ମୁଖ୍ୟ ହେନ୍‌ରିଚ୍ ହିମ୍‌ଲରଙ୍କ ସହ ଆଲୋଚନାରତ ସୁଭାଷ (୧୯୪୩)

(୪୦) ପୁଷ୍ପ ଯେତେବେଳେ ପ୍ରସ୍ଫୁଟିତ ହୁଏ ସେତେବେଳେ ତା'ର ପ୍ରତ୍ୟେକ ପାଖୁଡ଼ାରେ ସୌନ୍ଦର୍ଯ୍ୟ ତଥା ସୁବାସ ମହକିଉଠେ । ମଣିଷ ଯେତେବେଳେ ତା'ର ଶୈଶବ, କୈଶୋର ଅତିକ୍ରମ କରି ଯୌବନରେ ପୂର୍ଣ୍ଣ-ମାନବତ୍ୱ ଗ୍ରହଣ କରେ, ସେତେବେଳେ ପ୍ରକୃତି ତା' ଭିତରେ ବହୁ ପ୍ରାକୃତିକ ବିଭବ ଭରିଦିଏ । ଶାରୀରିକ, ମାନସିକ ତଥା ନୈତିକ ପରିପୁଷ୍ଟି ଭିତରେ ମଣିଷ ତା'ର ଅଭିବୃଦ୍ଧିକୁ ଉପଭୋଗ କରେ ।

(୪୧) ମଣିଷ ଭିତରେ ଅନ୍ତର୍ନିହିତ ଆତ୍ମାର ଅଭ୍ୟୁତ୍ଥାନ ଥରେ ଆରମ୍ଭ ହେଲେ ତାହା ଅସରନ୍ତି କର୍ମର ଉତ୍ସରୂପେ ପ୍ରତ୍ୟେକ ଦିଗକୁ ବିସ୍ତାରିତ ହୋଇଥାଏ । ଆମ ଭିତରେ ଥିବା ସୁପ୍ତ ସୃଜନୀଶକ୍ତିର ରହସ୍ୟ କେବଳ ଉଦ୍‌ଘାଟନ କରିବାର ଆବଶ୍ୟକତା ରହିଛି ।

(୪୨) ପୃଥିବୀରେ ଯଦି କେବେ ଶାନ୍ତି ପ୍ରତିଷ୍ଠିତ ହେବ, ତା'ହେଲେ ତାହା କେବଳ ଯୁବସମାଜର ପ୍ରଚେଷ୍ଟାରେ ସମ୍ଭବ ହେବ ।

(୪୩) ସାରା ପୃଥିବୀରେ ମଣିଷର ପ୍ରକୃତି ପ୍ରାୟ ସମାନ । ସବୁ ଯୁଗରେ ସବୁଦେଶରେ ମଣିଷର ସମସ୍ୟା ମଧ୍ୟ ପ୍ରାୟ ସମାନ । ଯଦି ବିଭିନ୍ନ ଦେଶର ଯୁବସମାଜ ଭିତରେ ଆନ୍ତର୍ଜାତିକ ସହଯୋଗ ଓ ବୁଝାମଣା ଅତୁଟ ରହିବ, ତା'ହେଲେ ପ୍ରତ୍ୟେକେ ପ୍ରତ୍ୟେକର ଉନ୍ନତିରେ ସାହାଯ୍ୟ କରିପାରିବେ ।

(୪୪) ଆମ୍ଭମାନଙ୍କର ଦେଶ ପାଇଁ କିମ୍ବା ଦେଶବାସୀଙ୍କ ପାଇଁ ପ୍ରକୃତ ପ୍ରେମ ନାହିଁ; ଫଳରେ ଆମ୍ଭମାନଙ୍କର ଅନ୍ତର୍ଦ୍ୱନ୍ଦ୍ୱର ମଧ୍ୟ ଅନ୍ତ ନାହିଁ । ଯୁଗେ ଯୁଗେ ମିର୍ଜାଫର ଓ ଉମୀଚାନ୍ଦଙ୍କ ପରି କୃତଘ୍ନ ଆମ ଭିତରେ ଜନ୍ମ ହେଉଛନ୍ତି ଓ ବଂଶ ବିସ୍ତାର କରୁଛନ୍ତି । ଆମେ ଯଦି ମାତୃଭୂମି ପ୍ରତି ପ୍ରକୃତ ପ୍ରେମଭାବ ପୋଷଣ କରିପାରନ୍ତୁ, ତା'ହେଲେ ଚାରିତ୍ରିକ ଉତ୍କର୍ଷ ସଂଘଟିତ ହୁଅନ୍ତା ।

(୪୫) 'ଅଜ୍ଞାତ' ପ୍ରତି ଆମର ଭୟ ଅଧିକ; ତେଣୁ ଆମେ ବିରାଟ ପୃଥିବୀରେ ବିସ୍ତୃତି ଅପେକ୍ଷା ଘରର ପରିସରକୁ ବରଂ ପସନ୍ଦ କରୁ—ଫଳରେ ଆମେ ଦୁଃସାହସିକ ହୋଇପାରୁ ନାହିଁ । ହେ ଯୁବବନ୍ଧୁଗଣ ! ଅଜ୍ଞାତ, ଅପରିଚିତ, ଅପ୍ରକଟ ତଥା ବିଶ୍ୱର

ଆବିଷ୍କାର ପାଇଁ ପାଗଳ ହୁଅ । ନିଜ ଘର ଅନ୍ଧକାର କୋଣରେ ବସି ରହିବାର ଆଉ ସମୟ ନାହିଁ । ଦୂର ଦିଗ୍‌ବଳୟ ତୁମକୁ ହାତଠାରି ଡାକୁଛି । ଅସୀମର ଆହ୍ୱାନ ପ୍ରତି କର୍ଣ୍ଣପାତ କର ।

(୪୬) ଚାକିରି ଜୀବନ-ସମସ୍ୟାର ସମାଧାନ କରିପାରିବ ନାହିଁ । ଚାକିରି ପାଇଁ ଆଶାୟୀ ବ୍ୟକ୍ତିଙ୍କ ତୁଳନାରେ ଚାକିରି ସଂଖ୍ୟା ଯଥେଷ୍ଟ ଅଳ୍ପ; ତେଣୁ ଆମକୁ ଚାକିରିରୁ ଦୃଷ୍ଟି ଫେରାଇ ଧନ୍ଦାଗତ ଶିକ୍ଷା ଉପରେ ଆବଦ୍ଧ କରିବାକୁ ହେବ । ଆଗାମୀ ବଂଶଧରଙ୍କ ପାଇଁ ବ୍ୟବସାୟ-ବାଣିଜ୍ୟ ବୃତ୍ତିଗତ କାର୍ଯ୍ୟର ନୂତନ ଦିଗ୍‌ବଳୟ ସୃଷ୍ଟି ନ କଲେ ଆମକୁ କ୍ଷୁଧା, ଅନାହାର ଭିତରେ ମୃତ୍ୟୁବରଣ କରିବାକୁ ହେବ । ଏଥିପାଇଁ ଧନ୍ଦାଭିତ୍ତିକ ଶିକ୍ଷାର ଆବଶ୍ୟକତା ରହିଛି ।

(୪୭) ଆମେ ଅନନ୍ତ ତଥା ଶାଶ୍ୱତ ସତ୍ତା ଭିତରୁ ଜନ୍ମଗ୍ରହଣ କରିଥିଲେ ମଧ୍ୟ ସ୍ୱାର୍ଥର ଖୋଳ ଭିତରେ ଆବଦ୍ଧ ହୋଇ ରହିଛୁ । ନିଜ ଭିତରେ ଥିବା ସେହି ପ୍ରଚ୍ଛନ୍ନ ମହାଶକ୍ତିରୁ ତିଳେମାତ୍ର ଉପଯୋଗ କରିବାକୁ ଆମେ ଅକ୍ଷମ ।



ମେଦିନାପୁରରେ କଂଗ୍ରେସ ସଭାପତି ସୁଭାଷଙ୍କୁ ଅଭ୍ୟର୍ଥନା

(୪୮) ମୋର ଧାରଣା, ସ୍ୱାଧୀନତା ପାଇଁ ଆରମ୍ଭ ହୋଇଥିବା କଂଗ୍ରେସର କାର୍ଯ୍ୟକ୍ରମ ଭାରତର ସ୍ୱାଧୀନତା ଯଥାଶୀଘ୍ର ଆଣିପାରିବ ନାହିଁ । ଯେଉଁ କାର୍ଯ୍ୟକ୍ରମ ଭାରତର ଆଶୁ ସ୍ୱାଧୀନତା ଆଣିପାରିବ, ତା'ର ସୂଚନା ତଳେ ଦିଆଗଲା :

(କ) ସାମ୍ୟବାଦୀ ଢାଞ୍ଚାରେ କୃଷକ ତଥା ଶ୍ରମିକମାନଙ୍କର ଏକ ସଂଗଠନ ସୃଷ୍ଟି କରିବା ।

(ଖ) କଠୋର ଶୃଙ୍ଖଳା ଭିତରେ ଯୁବସଂଗଠନ ମାଧ୍ୟମରେ ସ୍ୱେଚ୍ଛାସେବୀ ସଂସ୍ଥା ଗଠନ କରିବା ।

(ଗ) ସମାଜରୁ ଜାତିପ୍ରଥାର ସଂପୂର୍ଣ୍ଣ ବିଲୋପ ସାଧନ କରିବା ଓ ସମସ୍ତ ପ୍ରକାରର ସାମାଜିକ ତଥା ଧାର୍ମିକ ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂର କରିବା ।

(ଘ) ବିଦେଶୀ ଜିନିଷ ବର୍ଜନ କରିବା ।

(ଙ) ନାରୀ ସଂଗଠନ ସୃଷ୍ଟିକରି ସେମାନଙ୍କୁ ନୂତନ କାର୍ଯ୍ୟକ୍ରମ ପ୍ରତି ଆକର୍ଷଣ କରିବା ।

(ଚ) ନୂତନ ଚିନ୍ତା, ଚେତନା ଓ କାର୍ଯ୍ୟକ୍ରମ ପ୍ରସାର ପାଇଁ ସାହିତ୍ୟ ସୃଷ୍ଟି କରିବା ।

(୪୯) ସାମ୍ୟବାଦର ନୂତନ ଭାବଧାରା ପାଶ୍ଚାତ୍ୟ ଜଗତ୍‌ରୁ ଭାରତକୁ ପ୍ରବେଶ କରୁଛି ଏବଂ ଅନେକଙ୍କ ଚିନ୍ତାଧାରାରେ ବିପ୍ଲବର ପଦଧ୍ୱନି ସୃଷ୍ଟି ହୋଇଛି । କିନ୍ତୁ ମନେରଖିବାକୁ ହେବ, ସାମ୍ୟବାଦ ଏ ଦେଶ ପାଇଁ ଆଦୌ ନୂଆ ନୁହେଁ । କୌଣସି ଏକ ଚିନ୍ତାଧାରାକୁ ସଂପୂର୍ଣ୍ଣ ତ୍ରୁଟିଶୂନ୍ୟ କିମ୍ବା ଏକାନ୍ତ ଭାବରେ ଯଥାର୍ଥ ବୋଲି ଭାବିବା ଉଚିତ ନୁହେଁ ।

(୫୦) ଜୀବନରେ ଯଦି ସଂଘର୍ଷ ନାହିଁ ଏବଂ ବିପଦକୁ ସମ୍ମୁଖୀନ ହେବାର ସୁଯୋଗ ନାହିଁ, ତା' ହେଲେ ଜୀବନର ସ୍ୱାଦୁ ପ୍ରାୟ ଅଧା କମିଯାଏ ।

(୫୧) ମୋର କାହିଁକି ମନେହୁଏ, ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସାଲିସ୍ ମନୋଭାବ ଆଦୌ ଅଭିନନ୍ଦନୀୟ ନୁହେଁ । ଏହା ମନୁଷ୍ୟର ଜୀବନ-ଲକ୍ଷ୍ୟକୁ ବ୍ୟାହତ କରେ ଓ ତାକୁ ନିମ୍ନଗାମୀ କରିଥାଏ ।

(୫୨) ମାନବର ବ୍ୟକ୍ତିଗତ ଜୀବନ ବିଶ୍ୱଜୀବନ ପାଇଁ ଏକ ପ୍ରତିଶ୍ରୁତି ।

(୫୩) ମଣିଷ ସବୁ ସମୟରେ ତା' ଭାଗ୍ୟର ରୂପକାର ନୁହେଁ; ସମୟ-ସମୟରେ ସେ ମଧ୍ୟ ତା' ପରିସ୍ଥିତିର ଦାସ ।

(୫୪) ବିନା ବିପ୍ଳବରେ ମଣିଷ ଜୀବନରେ କୌଣସି ଗୌରବାବହ ସଫଳତା ହାସଲ କରିପାରେ ନାହିଁ ।

(୫୫) ଜୀବନର ଅସୁମାର ସନ୍ଦେହ ଓ ତାକୁ ଦୂର କରିବା ପାଇଁ ଅବିଶ୍ରାନ୍ତ ଚେଷ୍ଟାର ଅନ୍ୟ ନାମ ହେଉଛି ଅଗ୍ରଗତି ବା ପ୍ରଗତି ।

(୫୬) ଆଦୌ ଚେଷ୍ଟା ନ କରିବା ଅପେକ୍ଷା, ଚେଷ୍ଟାକରି ସଫଳ ନହେବା ବରଂ ସ୍ପୃହଣୀୟ ।



ଗାନ୍ଧିଜୀଙ୍କ ଆଶ୍ରମରେ ସୁଭାଷ

(୫୭) ମହାତ୍ମା ଗାନ୍ଧିଙ୍କର ମୋ ଉପରେ କି ଧାରଣା ସୃଷ୍ଟି ହୋଇଛି, ମୁଁ ଜାଣେନା । ସେ ଯାହା ଧାରଣା କରିଥାନ୍ତୁ ନା କାହିଁକି, ତାଙ୍କର ଶ୍ରଦ୍ଧା ବିଶ୍ୱାସ କଥା ଆଶୀର୍ବାଦ ମୋର କାମ୍ୟ । ଯଦି ଲୋକମାନଙ୍କର ଆସ୍ଥାଭାଜନ ହେବା ଦିଗରେ ମୁଁ ସଫଳ ହୋଇପାରିବି ଅଥଚ ଭାରତର ମହାନ୍ ନେତା ଜାତିର ଜନକ ବାପୁଜୀଙ୍କର ଆସ୍ଥାବାନ୍ ହୋଇପାରିବି ନାହିଁ, ତା'ହେଲେ ଏହା ହେବ ମୋପାଇଁ ସବୁଠାରୁ ବଳି ଦୁର୍ଭାଗ୍ୟଜନକ ।

(୫୮) ବିଦେଶୀ ଶାସକଙ୍କୁ ସ୍ୱାଧୀନତାର ଭିକ୍ଷା ମାଗି ଭାରତକୁ ସ୍ୱାଧୀନ କରାଯାଇ ନପାରେ । ବଳପୂର୍ବକ ଆମକୁ ଆମର ସ୍ୱାଧୀନତା ହାସଲ କରିବାକୁ ପଡ଼ିବ । ସ୍ୱାଧୀନତାର ମୂଲ୍ୟ ହେଉଛି ରକ୍ତ । ଏହି ମୂଲ୍ୟ ଦେଇ ଆମକୁ ସ୍ୱାଧୀନତା ହାସଲ କରିବାକୁ ହେବ । ତେବେ କେତେ ମୂଲ୍ୟ ଦେବାକୁ ହେବ ସେଥିପାଇଁ ବ୍ୟସ୍ତ ହେବାର କିଛି ନାହିଁ ।

(୫୯) ଭାରତର ସ୍ୱାଧୀନତା ହାସଲ କରିବା ପାଇଁ ସଂଗ୍ରାମ କରିବାକୁ ଏକ ମୁକ୍ତିବାହିନୀ ଗଠନ କରିବାର ସ୍ୱପ୍ନ ମୁଁ ସାରା ଜୀବନ ଦେଖିଛି । ସ୍ୱାଧୀନତା ଲାଭ ପାଇଁ ଆମେ ସବୁ ଦିଗରୁ ଯୋଗ୍ୟ ହୋଇଥିଲେ ମଧ୍ୟ କେବଳ ଏଇ ଗୋଟିଏ ଦିଗରେ ଆମେ ପଛେଇ ଯାଇଛୁ ।

(୬୦) ବ୍ରିଟିଶ ଶାସନର ଭସ୍ମକୁଡ଼ ଭିତରୁ ସ୍ୱାଧୀନ ଭାରତ ଜନ୍ମଲାଭ କରିବ । ଅତୀତରେ ଭାରତ ଯେପରି ସ୍ୱାଧୀନ, ସ୍ୱାଭିମାନୀ ଏବଂ ସମୃଦ୍ଧ ଥିଲା, ସେହିପରି ଭବିଷ୍ୟତ ଭାରତ ସ୍ୱାଧୀନ ଓ ସମୃଦ୍ଧ ହୋଇ ରହିବ ଏବଂ ଭାରତୀୟମାନେ ପୃଥିବୀର ଅନ୍ୟାନ୍ୟ ଜାତି ସହିତ ନିବିଡ଼ ଭ୍ରାତୃବଂଧନ ଭିତରେ ଆବଦ୍ଧ ରହିବେ ।

(୬୧) ପ୍ରତ୍ୟେକ ଭାରତୀୟ ସ୍ୱାଧୀନତା ପାଇଁ ସାହସର ସହିତ ସଂଗ୍ରାମ କରିବା ଉଚିତ । ସେମାନଙ୍କର ଏକ ଦୃଢ଼ ଧାରଣା ରହିବା ଉଚିତ ଯେ ଆମ ପିତୃପୁରୁଷର ଏବଂ ଆମର ଜନ୍ମ ତଥା କର୍ମଭୂମି ଭାରତର ମୁକ୍ତି ପ୍ରଭାତ ଆସନ୍ନ ପ୍ରାୟ । ସ୍ୱାଧୀନ-ସୂର୍ଯ୍ୟର ଅରୁଣ ଆଭା ପୂର୍ବାଶାରେ ପ୍ରକଟିତ ହେଲାଣି ।

(୬୨) ସାରାଜୀବନ ମୁଁ ଭାରତମାତାର ସେବକ ଏବଂ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୁଁ ମଧ୍ୟ ମାତୃଭୂମିର ସେବାରେ ଅନୁରକ୍ତ ରହିବି । ମୋର ବିଶ୍ୱସ୍ତତା ଭାରତ ପ୍ରତି ଅତୀତରେ ଥିଲା ଏବଂ ଚିରଦିନ ପାଇଁ ରହିବ ମଧ୍ୟ ।

(୬୩) ଭାରତୀୟ ଜାତୀୟ କଂଗ୍ରେସ ୧୮୮୫ରେ ଉଦ୍‌ଘାଟିତ ହେଲାଦିନଠାରୁ ଭାରତରେ ଏକ ନବଜାଗରଣର ସୂତ୍ରପାତ ହେଲା । ସ୍ୱାଧୀନତା ସଂଗ୍ରାମକୁ ସଫଳ କରିବା ପାଇଁ ବିଭିନ୍ନ ନୂତନ ସୂତ୍ର ପ୍ରୟୋଗ କରାଗଲା । ପ୍ରଥମ ଅବସ୍ଥାରେ ଅର୍ଥନୈତିକ ବାସନ୍ଦ (Economic boycott) ସ୍ୱରୂପ ବିଦେଶୀ ଜିନିଷର ବହିଷ୍କାର ଓ ଅନ୍ୟ ଦିଗରେ ଭାରତୀୟ ବିଦ୍ରୋହୀମାନଙ୍କର ଆତଙ୍କରାଜ । ଏହା ବିଫଳ ହେବାପରେ ମହାତ୍ମା ଗାନ୍ଧି ସେହି ମନସ୍ତାତ୍ତ୍ୱିକ ମୁହୂର୍ତ୍ତରେ ସତ୍ୟାଗ୍ରହ ତଥା ଅହିଂସ ଆନ୍ଦୋଳନକୁ ସଂଗ୍ରାମର ଅସ୍ତ୍ରରୂପେ ଗ୍ରହଣ କଲେ । ମହାତ୍ମାଜୀଙ୍କ ସାର୍ଥକ ନେତୃତ୍ୱ ନେଇ ସାରା ଦେଶରେ ଏକ ଶକ୍ତିଶାଳୀ ଅନୁଷ୍ଠାନ ମୁଣ୍ଡ ଟେକିଲା । ବିନା ଅସ୍ତ୍ରରେ ଏକ ଦୁର୍ଦ୍ଧର୍ଷ ଶକ୍ତି ବିରୁଦ୍ଧରେ ସଂଗ୍ରାମ କରି ତାହାକୁ କିପରି ଅଚଳ କରାଯାଇପାରିବ, ସେ ଦିଗରେ ମଧ୍ୟ ଶିକ୍ଷା ମିଳିଲା । ଏହା ହେଉଛି ଭାରତୀୟ ସ୍ୱାଧୀନତା ସଂଗ୍ରାମର ବିଶେଷତ୍ୱ ।

(୬୪) ସ୍ୱାଧୀନତା କେହି କାହାକୁ ଦିଏନାହିଁ । ଭାରତୀୟମାନଙ୍କୁ ତ୍ୟାଗ ତଥା ସଂଗ୍ରାମ ବଳରେ ନିଜର ସ୍ୱାଧୀନତା ହାସଲ କରିବାକୁ ପଡ଼ିବ ।



ରୋମା ରୋଲାଁଙ୍କ ସହ ସୁଭାଷ ବୋଷ

(୬୫) ଭାରତୀୟ ଜୀବନଧାରାରେ ମୁସଲମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ହିନ୍ଦୁ ମୁସଲମାନ ଭାରତର ଦୁଇଟି ଅବିଚ୍ଛିନ୍ନ ପ୍ରବାହ । ସେମାନଙ୍କ ଭିତରେ ଯେଉଁ ପ୍ରଭେଦ ବା ବିଭେଦ ଥିବା କଥା କୁହାଯାଉଛି, ତାହା କୃତ୍ରିମ ମନଗଢ଼ା ତଥା ସ୍ୱାର୍ଥପ୍ରଣୋଦିତ ।

(୬୬) ନୈତିକତା ଓ ରାଜନୀତି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ରାଜନୀତିରୁ ନୈତିକତାକୁ ବାଦ୍ ଦିଆଯାଇ ପାରିବ ନାହିଁ । ନୀତିହୀନ ରାଜନୀତି ରାଜନୀତି ନୁହେଁ ।

(୬୭) ମୁଁ ବର୍ତ୍ତମାନ ବୁଝୁଛି ଯେ ମଣିଷର ଜୀବନ ସମନ୍ୱିତ ଭାବରେ ଏକ । ଆମେ ଯଦି କୌଣସି ଏକ ଆଦର୍ଶ ଗ୍ରହଣ କରିବା, ତା' ହେଲେ ସେଥିପାଇଁ ସାରା ଜୀବନକୁ ଉତ୍ସର୍ଗ କରିବା ଉଚିତ; ଫଳରେ ତାହା ଆମର ଜୀବନକୁ ଆଲୋକିତ ତଥା ରୂପାନ୍ତରିତ କରିଦେଇ ପାରିବ ।

(୬୮) ଯେଉଁ ଶିକ୍ଷା ପ୍ରଣାଳୀ ଭାରତୀୟ ଅବସ୍ଥା, ଭାରତୀୟ ଆବଶ୍ୟକତା, ଭାରତୀୟ ଇତିହାସ ଓ ସାମାଜିକତାକୁ ଉପେକ୍ଷା କରେ, ତାହା ବିଜ୍ଞାନସମ୍ମତ ନୁହେଁ ଓ ଏହା ଜନସାଧାରଣଙ୍କର ସମର୍ଥନ ଲାଭ କରିପାରିବ ନାହିଁ । ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ମଧ୍ୟରେ ସାଂସ୍କୃତିକ ସଂପର୍କ ସ୍ଥାପନ ପାଇଁ ଏବଂ ମନସ୍ତାତ୍ତ୍ୱିକ ଆଭିମୁଖ୍ୟ ଦୃଷ୍ଟିରୁ ଇଂରାଜୀ ଶିକ୍ଷା ଭାରତୀୟ ଶିଶୁମାନଙ୍କ ଉପରେ ଲଦିଦେବା ଆଦୌ ଉଚିତ ନୁହେଁ । ମାନସିକ ଅବସ୍ଥାର ପୂର୍ଣ୍ଣ-ବିକାଶପରେ ପାଶ୍ଚାତ୍ୟ ସମ୍ପର୍କରେ ଛାତ୍ରମାନେ ଆସିବାର ସୁଯୋଗ ପାଇଲେ, ସେମାନେ ଉଭୟ ସଭ୍ୟତା ତଥା ସଂସ୍କୃତିର ଭଲମନ୍ଦ ଦିଗ ବିଚାର କରିପାରିବେ ।

(୬୯) ପରିସ୍ଥିତିର ତାଡ଼ନାରେ ମଣିଷ ଯେତେବେଳେ ନିଜର ଆତ୍ମୀୟ ତଥା ପ୍ରିୟ ବ୍ୟକ୍ତିମାନଙ୍କ ଗହଣରୁ ବିଦାୟ ନେବାକୁ ବାଧ୍ୟ ହୁଏ, ସେତେବେଳେ ସେ ସ୍ନେହ-ଶ୍ରଦ୍ଧାର ପ୍ରଭାବ ପ୍ରକୃତରେ ଉପଲବ୍ଧି କରେ ।

(୭୦) ପ୍ରକୃତି ପାଖରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ସମର୍ପଣ କର ଓ ପ୍ରକୃତି ସହିତ କଥୋପକଥନ କର । ଆତ୍ମାର ଭାଷା ହିଁ ପ୍ରକୃତିର ଭାଷା । ତାହା ତୁମକୁ ନିଶ୍ଚୟ ଆନନ୍ଦ ଦେବ; ହୃଦୟରେ ଶାନ୍ତି ଦେବ ଏବଂ ମନୋବଳ ନିଶ୍ଚୟ ସୃଷ୍ଟି କରିବ । ମୋ

ୀବନରେ ମୁଁ ଏହା ଉପଲବ୍ଧି କରିଛି । ପ୍ରକୃତିର ଲୁକ୍କାୟିତ ବିଭବ ମୁଁ ଅନୁସଂଧାନ ।ରିଛି, ଏହା ମୋର ମାନସିକ ଏକାଗ୍ରତା ରକ୍ଷା ଦିଗରେ ସାହାଯ୍ୟ କରିଛି । ପ୍ରସ୍ଫୁଟିତ ୍ପ, ନବୋଦ୍ୟମ କିଶଳୟ, ତଥା ବିକାଶୋନ୍ମୁଖୀ ଉଦ୍ଭିଦ ଭିତରେ ଯେଉଁ ଅବର୍ଣ୍ଣନୀୟ ।ାନନ୍ଦ ଭରପୂର ହୋଇ ରହିଛି, ତାହା କେତେ ଯେ ମୋତେ ଆନନ୍ଦ ଦେଇଛି, ।ାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ ।

(୭୧) କାରଣ ଅଜ୍ଞାତ ଥିବା ପର୍ଯ୍ୟନ୍ତ ମାନସିକ ଦୁର୍ବଳତା ତଥା ଶାରୀରିକ ରାଗ ବୃଦ୍ଧିଲାଭ କରିଥାଏ । କାରଣର ପ୍ରକାଶରେ ଏହା ମଶମିତ ହୁଏ । ମାନସିକ ଂଶ୍ଳେଷଣ ମାଧ୍ୟମରେ ମଣିଷ ଯେଉଁ ମୁହୂର୍ତ୍ତରେ ତା'ର ମାନସିକ ଦ୍ୱନ୍ଦ୍ୱ ତଥା ସଂଘର୍ଷର ୂଳ କାରଣ ଜାଣିପାରେ, ସେହି ମୁହୂର୍ତ୍ତରେ ତାହା ଦୂର ହୋଇଯାଇପାରେ ।

(୭୨) ଯେତେବେଳେ ଜ୍ଞାତ ଏବଂ ଅଜ୍ଞାତ ସମ୍ପୂର୍ଣ୍ଣ ଭାବରେ ଏକ ହାଇଯାଆନ୍ତି ଏବଂ ଉଭୟ ଭିତରେ ଭିନ୍ନତା ରହେ ନାହିଁ, ସେତିକିବେଳେ ମଣିଷ ।କୃତ ଜ୍ଞାନର ଅଧିକାରୀ ହୋଇପାରେ । ମଣିଷର ଉନ୍ନତ ଅବଚେତନା ମଧ୍ୟରେ ।ାହିଁ ସମ୍ଭବ ।

(୭୩) ସ୍ୱାମୀ ବିବେକାନନ୍ଦଙ୍କ ମତ ସହିତ ମୁଁ ଏକମତ ଯେ ମନୁଷ୍ୟର ଗତି ।ଥ୍ୟାରୁ ସତ୍ୟ ଆଡ଼କୁ ନୁହେଁ; ବରଂ ସତ୍ୟକୁ ମହାସତ୍ୟ ଆଡ଼କୁ ସେ ଅଗ୍ରସର ହାଇଥାଏ ।

(୭୪) ପ୍ରେମ ହେଉଛି ବାସ୍ତବତାର ସର୍ବଶ୍ରେଷ୍ଠ ବିଭାବ । ଏହା ବିଶ୍ୱ ସୃଷ୍ଟିର ୂଳମନ୍ତ୍ର ଓ ମାନବ ଜୀବନର ସର୍ବୋତ୍ତମ ଅବଲମ୍ବନ । ମୁଁ ମୋ ଚତୁଃପାର୍ଶ୍ୱରେ ପ୍ରେମର ।ରିପୂର୍ତ୍ତି ଦେଖିବାକୁ ପାଉଛି । ମୋ ନିଜ ଭିତରେ ମଧ୍ୟ ମୁଁ ପ୍ରେମ-ପ୍ରବୃତ୍ତିର ପ୍ରହ୍ଲାଦନ ।ନୁଭବ କରୁଛି । ମୋ ନିଜର ପୂର୍ଣ୍ଣତା ପାଇଁ ତଥା ଜୀବନର ପୁନର୍ଗଠନ ପାଇଁ ମୁଁ ପ୍ରମ ଆବଶ୍ୟକ କରେ ।

(୭୫) "ଏ ସଂସାର ମରଣଶୀଳ ଓ ଏଠାରେ ପ୍ରତ୍ୟେକଙ୍କୁ ମୃତ୍ୟୁର ସମ୍ମୁଖୀନ ହବାକୁ ପଡ଼େ । ମନୁଷ୍ୟ ମୃତ୍ୟୁବରଣ କଲେ ମଧ୍ୟ ତା'ର ଆଦର୍ଶ, ନୀତି ଓ ସ୍ୱପ୍ନ କବେହେଲେ ଲୋପ ପାଏ ନାହିଁ ।"

# ନେତାଜୀଙ୍କ ଜୀବନର କେତେକ ଗୁରୁତ୍ୱପୂର୍ଣ୍ଣ ଦିବସ

୨୩.୦୧.୧୮୯୭ : କଟକର ଓଡ଼ିଆ ବଜାରରେ ଜନ୍ମଗ୍ରହଣ

୨୫.୦୭.୧୯୦୨ : ପ୍ରୋଟେଷ୍ଟାଣ୍ଟ ଇଉରୋପିଆନ୍ ବଏଜ୍ ସ୍କୁଲ କଟକରେ ନାମଲେଖା

୧୧.୦୧.୧୯୦୯ : ଷଷ୍ଠ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସା କଲିଜିଏଟ୍ ସ୍କୁଲ କଟକରେ ନାମଲେଖା

ଜୁନ୍ ୧୯୧୩ : କଲିକତା ବିଶ୍ୱବିଦ୍ୟାଳୟରୁ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ରଖି ଉତ୍ତୀର୍ଣ୍ଣ

ଅଗଷ୍ଟ ୧୯୧୩ : କଲିକତାର ପ୍ରେସିଡେନ୍ସି କଲେଜରେ ନାମଲେଖା

ଫେବୃଆରି ୧୯୧୬ : ବି.ଏ. ଶ୍ରେଣୀରେ ପଢୁଥିବାବେଳେ ପ୍ରେସିଡେନ୍ସି କଲେଜରୁ ବହିଷ୍କୃତ

୧୫.୦୭.୧୯୧୭ : କଲିକତା ବିଶ୍ୱବିଦ୍ୟାଳୟର କୁଳପତି ସାର୍ ଆଶୁତୋଷ ମୁଖାର୍ଜୀଙ୍କ ହସ୍ତକ୍ଷେପ ଫଳରେ କଲିକତାର ସ୍କଟିସ୍ ଚର୍ଚ୍ଚ କଲେଜରେ ନାମଲେଖା

୧୯୧୯ : ଦର୍ଶନଶାସ୍ତ୍ର ଅନର୍ସରେ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରି କଲିକତା ବିଶ୍ୱବିଦ୍ୟାଳୟରୁ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ

୧୫.୦୯.୧୯୧୯ : କଲିକତାରୁ ଇଂଲଣ୍ଡ ଅଭିମୁଖେ ଯାତ୍ରା

୦୭.୦୭.୧୯୨୦ : ଆଇ.ସି.ଏସ୍. ପରୀକ୍ଷାର ପରୀକ୍ଷାର୍ଥୀ

୧୯.୦୯.୧୯୨୦ : ଆଇ.ସି.ଏସ୍.ରେ ଚତୁର୍ଥ ସ୍ଥାନ ଅଧିକାର କରି ଇଣ୍ଡିଆନ୍ ସିଭିଲ ସର୍ଭିସ୍‌ରେ ଯୋଗଦାନ କରିବାକୁ ଯୋଗ୍ୟ ବିବେଚିତ

୨୨.୦୪.୧୯୨୧ : ଆଇ.ସି.ଏସ୍. ଚାକିରିରୁ ଇସ୍ତଫା

୦୨.୦୬.୧୯୨୧ : ଭାରତକୁ ଜାହାଜରେ ପ୍ରତ୍ୟାବର୍ତ୍ତନ ଏବଂ ସେହି ଜାହାଜରେ ରବୀନ୍ଦ୍ର ନାଥ ଠାକୁର ସୁଭାଷଙ୍କ ସହଯାତ୍ରୀ

୧୬.୦୭.୧୯୨୧ : ବମ୍ବେ ବନ୍ଦରରେ ଅବତରଣ ଓ ମହାତ୍ମା ଗାନ୍ଧିଙ୍କ ସହିତ ସାକ୍ଷାତ

୧୮.୦୮.୧୯୨୧ : କଂଗ୍ରେସ ଦ୍ୱାରା ଆହୂତ ଅସହଯୋଗ ଆନ୍ଦୋଳନରେ ଯୋଗଦାନ

୧୮.୧୨.୧୯୨୧ : ନିଜ ରାଜନୈତିକ ଗୁରୁ ଚିତ୍ତରଂଜନ ଦାସଙ୍କ ସହ ପ୍ରିନ୍ସ ଅଫ୍ ୱେଲସଙ୍କ ଭାରତ ପରିଦର୍ଶନକୁ ବାସନ୍ଦ କରିବା ଅଭିଯୋଗରେ ଗିରଫ ଏବଂ ୮ ମାସ ଜେଲଦଣ୍ଡରେ ଦଣ୍ଡିତ

୧୭.୦୮.୧୯୨୨ : ଆଲିପୁର ସେଣ୍ଟ୍ରାଲ ଜେଲରୁ ଖଲାସ ଓ ସେହିବର୍ଷ ବଂଗଳା ରାଜ୍ୟ କଂଗ୍ରେସର ସଂପାଦକ ଭାବରେ ନିଯୁକ୍ତ

୨୧.୧୧.୧୯୨୩ : କଲିକତା ମ୍ୟୁନିସିପାଲ କର୍ପୋରେଶନର କାଉନସିଲର ରୂପେ ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ନିର୍ବାଚିତ

୨୩.୦୪.୧୯୨୪ : ସର୍ବସମ୍ମତି କ୍ରମେ କଲିକତା ମ୍ୟୁନିସିପାଲ କର୍ପୋରେଶନର ଚିଫ୍ ଏକ୍‌ଜିକ୍ୟୁଟିଭ ଭାବେ ନିର୍ବାଚିତ

୨୫.୧୦.୧୯୨୪ : ବେଂଗଲର ବିପ୍ଳବୀମାନଙ୍କୁ ସହାୟତା କରୁଥିବା ଅଭିଯୋଗରେ କଲିକତାରେ ଗିରଫ ଏବଂ କଲିକତା ଓ ବରହମପୁର ଜେଲରେ ବନ୍ଦୀ ଜୀବନ କଟାଇବା ପରେ ମାଣ୍ଡାଲେ ଜେଲକୁ ସ୍ଥାନାନ୍ତର

୨୮.୧୨.୧୯୨୬ : ଜେଲରେ ଥିବା ସମୟରେ ନର୍ଥ କଲିକତା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ରୂପେ ନିର୍ବାଚନରେ ଅଂଶଗ୍ରହଣ କରି ଜୟଯୁକ୍ତ

ମେ' ୧୯୨୭ : ମାଣ୍ଡାଲେ ଜେଲରୁ ମୁକ୍ତ

୧୮.୧୧.୧୯୨୭ : ସାଇମନ କମିଶନ ଭାରତରେ ପହଂଚିବା ପରେ ତାକୁ ବାସନ୍ଦ କରିବାକୁ ଆନ୍ଦୋଳନର ନେତୃତ୍ୱ

୦୯.୧୨.୧୯୨୭ : ସର୍ବଭାରତୀୟ ଯୁବ କଂଗ୍ରେସର ସଭାପତି ରୂପେ ନିର୍ବାଚିତ

୧୭.୧୨.୧୯୨୭ : ସର୍ବଭାରତୀୟ କଂଗ୍ରେସ କମିଟିର ସାଧାରଣ ସଂପାଦକ ଭାବେ ନିର୍ବାଚିତ

୧୮.୯.୧୯୨୮ : କଲିକତାରେ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ କଂଗ୍ରେସ ଅଧିବେଶନ ବେଳେ ସ୍ୱେଚ୍ଛାସେବୀମାନଙ୍କ ଦାୟିତ୍ୱରେ ରହି ଅପୂର୍ବ ସଫଳତା ଲାଭ

୧୧.୧.୧୯୩୦ : କଲିକତାରେ ଟ୍ରେଡ୍ ୟୁନିୟନ କଂଗ୍ରେସର ସଭାପତି ଭାବରେ ଭାଷଣ ଦେଉଥିବା ସମୟରେ ପୋଲିସ ଦ୍ୱାରା ଗିରଫ ଓ କଲିକତା ସେଣ୍ଟ୍ରାଲ ଜେଲରେ ବନ୍ଦୀ ଜୀବନଯାପନ

୨୩.୮.୧୯୩୦ : ଜେଲରେ ଥିଲାବେଳେ କଲିକତା ମ୍ୟୁନିସିପାଲ କର୍ପୋରେଶନର ମେୟର ଭାବେ ନିର୍ବାଚିତ

୨୯.୯.୧୯୩୦ : ଜେଲରୁ ମୁକ୍ତି

୨୬.୧.୧୯୩୧ : କଲିକତାରେ ଏକ ଶୋଭାଯାତ୍ରାର ନେତୃତ୍ୱ ନେଇ ଯାଉଥିବାବେଳେ ପୋଲିସର ଲାଠି ପ୍ରହାରରେ ସାଂଘାତିକ ଭାବରେ ଆହତ ଏବଂ ପରେ ପରେ ଛ'ମାସ ଜେଲଦଣ୍ଡରେ ଦଣ୍ଡିତ

୮.୩.୧୯୩୧ : ମହାତ୍ମା ଗାନ୍ଧି ଓ ଲର୍ଡ ଇରଉଇନଙ୍କ ମଧ୍ୟରେ ସ୍ୱାକ୍ଷରିତ ଚୁକ୍ତି ଯୋଗୁଁ ଜେଲରୁ ମୁକ୍ତି

୨.୧.୧୯୩୨ : ଗାନ୍ଧିଜୀଙ୍କ ସହିତ ବମ୍ବେରେ ସ୍ୱାଧୀନତା ଆନ୍ଦୋଳନ ସଂପର୍କରେ ଆଲୋଚନା କରି ଫେରୁଥିବାବେଳେ କଲ୍ୟାଣୀଠାରେ ପୋଲିସ ଦ୍ୱାରା ଗିରଫ ଓ ବମ୍ବେର ସିଓନି ଜେଲକୁ ସ୍ଥାନାନ୍ତରିତ

୧୩.୦୨.୧୯୩୩ : ଚିକିତ୍ସା ନିମନ୍ତେ ୟୁରୋପ ଯାତ୍ରା ଓ ଭିଏନାର ଏକ ନର୍ସିଂହୋମରେ ରୁଗ୍ଣ ସ୍ୱାସ୍ଥ୍ୟ ଯୋଗୁଁ ଚିକିତ୍ସିତ

୨୭.୧୧.୧୯୩୪ : ଜାନକୀନାଥ ବୋଷଙ୍କର ସାଂଘାତିକ ଅସୁସ୍ଥତା ଖବର ପାଇ କଲିକତାରୁ ପ୍ରତ୍ୟାବର୍ତ୍ତନ କିନ୍ତୁ ଆସିବାର ଦୁଇ ଦିନ ପୂର୍ବରୁ ଜାନକୀନାଥ ବୋଷଙ୍କର ମୃତ୍ୟୁ ଏବଂ କଲିକତା ଏଲଗିନ୍ ରୋଡ଼ ବାସଭବନରେ ଗୃହବନ୍ଦୀ

ଜାନୁଆରୀ ୧୯୩୫ : ନିଜ ରଚିତ ପୁସ୍ତକ 'The Indian Struggle 1920-34' ପ୍ରକାଶନ

୧୮.୦୩.୧୯୩୫ : ପୁନର୍ବାର ଚିକିତ୍ସା ପାଇଁ ୟୁରୋପ ଯାତ୍ରା

୦୮.୦୩.୧୯୩୬ : ଭିଏନାରେ ଅଷ୍ଟ୍ରିଆ-ଭାରତ ସୋସାଇଟି ପ୍ରତିଷ୍ଠା

ମାର୍ଚ୍ଚ ୧୯୩୬ : ଚେକୋସ୍ଲୋଭାକିଆ, ଆୟରଲାଣ୍ଡ, ପୋଲାଣ୍ଡ, ଜର୍ମାନୀ ଓ ଇଟାଲୀ ପରିଦର୍ଶନ ଏବଂ ଇଟାଲୀରେ ମୁସୋଲିନୀଙ୍କ ସହିତ ସାକ୍ଷାତ

୮.୪.୧୯୩୬ : ବ୍ରିଟିଶ ସରକାରଙ୍କ ବାରଣ ସତ୍ତ୍ୱେ ଭାରତ ପ୍ରତ୍ୟାବର୍ତ୍ତନ ଏବଂ ବମ୍ବେରେ ପହଂଚିବା ପରେ ପୋଲିସ ଦ୍ୱାରା ଗିରଫ ହୋଇ ଆର୍ଥର ରୋଡ଼ ଜେଲରେ ବନ୍ଦୀ

୧୩.୦୩.୧୯୩୭ : ବିନା ସର୍ତ୍ତରେ ସ୍ୱାସ୍ଥ୍ୟଗତ କାରଣରୁ ଜେଲରୁ ମୁକ୍ତି

ଡିସେମ୍ବର ୧୯୩୭ : ଏମିଲି ଶେଙ୍କେଲଙ୍କ ସହ ବିବାହ

ଜାନୁଆରୀ ୧୯୩୮ : ସ୍ୱଳ୍ପକାଳ ପାଇଁ ୟୁରୋପ ଯାତ୍ରା ଓ ନିଜର ଆତ୍ମଜୀବନୀ 'An Indian Pilgrim' ରଚନା

୧୮.୦୩.୧୯୩୮ : ଗୁଜୁରାଟର ହରିପୁରାଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ସଭାପତି ରୂପେ ନିର୍ବାଚିତ

୧୨.୦୪.୧୯୩୯ : ଦ୍ୱିତୀୟ ଥର ପାଇଁ ମଧ୍ୟପ୍ରଦେଶର ଜବଲପୁର ନିକଟବର୍ତ୍ତୀ ତ୍ରିପୁରୀରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ନିର୍ବାଚିତ

୧୭.୦୫.୧୯୩୯ : ଗାନ୍ଧିଜୀଙ୍କ ସହିତ ଗୁରୁତର ମତପାର୍ଥକ୍ୟ ଯୋଗୁଁ କଂଗ୍ରେସ ସଭାପତି ପଦରୁ ଇସ୍ତଫା ପ୍ରଦାନ

୨୫.୦୫.୧୯୩୯ : କଂଗ୍ରେସରେ 'ଫରୱାର୍ଡ଼ ବ୍ଲକ୍' ଗଠନ

୧୫.୦୮.୧୯୩୯ : ଫରଓଆର୍ଡ଼ ବ୍ଲକ୍ ନାମରେ ଏକ ସାପ୍ତାହିକୀ ପତ୍ରିକାର ପ୍ରକାଶନ ଓ ସଂପାଦକ ଦାୟିତ୍ୱ ଗ୍ରହଣ

୦୩.୦୯.୧୯୩୯ : ମାଡ୍ରାସର ମାରିନା ସମୁଦ୍ର କୂଳରେ ଏକ ବିରାଟ ସାଧାରଣ ସଭାରେ ଭାଷଣ ଦେଇ ଭାରତକୁ ସ୍ୱାଧୀନ କରିବାର ସୁବର୍ଣ୍ଣ ସୁଯୋଗ ଉପସ୍ଥିତ ବୋଲି ଘୋଷଣା

୧୯୩୯-୧୯୪୫ : ଦ୍ୱିତୀୟ ବିଶ୍ୱଯୁଦ୍ଧ

୦୩.୦୭.୧୯୪୦ : Diffence of India Act ଦ୍ୱାରା ଗିରଫ ଓ କଲିକତା ପ୍ରେସିଡେନ୍ସି ଜେଲରେ ବନ୍ଦୀ

୦୫.୧୨.୧୯୪୦ : ସ୍ୱାସ୍ଥ୍ୟଗତ କାରଣରୁ ଜେଲରୁ ମୁକୁଳି କଲିକତାରେ ଗୃହବନ୍ଦୀ

୧୬-୧୭.୧.୧୯୪୧ : ୩୮/୧ ଏଲଗିନ୍ ରୋଡ୍ ଗୃହରୁ ମଧ୍ୟରାତ୍ରିରେ ବ୍ରିଟିଶ ପୋଲିସ୍ ଆଖିରେ ଧୂଳିଦେଇ ପଳାୟନ ଏବଂ ଧାନବାଦରେ ରାତ୍ରି ବିତାଇ ଦ୍ୱିତୀୟ ଦିନ ଗୋମୋ ରେଲୱେ ଷ୍ଟେସନରୁ କାଲକା-ଦିଲ୍ଲୀ ମେଲ୍‌ରେ ଦିଲ୍ଲୀ ଯାତ୍ରା

୧୯.୦୧.୧୯୪୧ : ଦିଲ୍ଲୀଠାରୁ ଫ୍ରଣ୍ଟିଅର ମେଲ୍‌ରେ ଯାତ୍ରା କରି ପେଶୱାର କ୍ୟାଣ୍ଟନମେଣ୍ଟ ଷ୍ଟେସନକୁ ଯାତ୍ରା ଏବଂ ସେଠାରେ ଭଗତରାମ ତଲୱାରଙ୍କ ସହାୟତାରେ କାବୁଲକୁ ପଳାୟନ

୨୧.୦୧.୧୯୪୧ : କାବୁଲରେ ପହଂଚି କିଛିଦିନ ହୋଟେଲରେ ଓ ପରବର୍ତ୍ତୀ ସମୟରେ ଉତ୍ତମ ଚାନ୍ଦ ନାମକ ଜଣେ ବ୍ୟବସାୟୀଙ୍କ ଘରେ ରହି ବର୍ଲିନ୍ ଯିବା ପାଇଁ ପ୍ରସ୍ତୁତି

୧୮.୦୩.୧୯୪୧ : ଇଟାଲୀର ରାଷ୍ଟ୍ରଦୂତଙ୍କ ସହାୟତାରେ ଅର୍ଲାଣ୍ଡୋ ମାଜୋଟା ନାମରେ ପାସପୋର୍ଟ ନେଇ ଅନ୍ୟ ଦୁଇଜଣ ଅଫିସରଙ୍କ ସାଙ୍ଗରେ କାରରେ ଯାତ୍ରା ଏବଂ ପରେ ରେଳ ଯୋଗେ ସୋଭିଏଟ୍‌ର ତେରମେଜକୁ ଯାତ୍ରା

ଏପ୍ରିଲ ୧୯୪୧ : ମସ୍କୋରୁ ବିମାନରେ ବର୍ଲିନ୍ ଯାତ୍ରା ଓ ସେଠାରେ ଅବସ୍ଥାନ

୦୨.୧୧.୧୯୪୧ : ବର୍ଲିନ୍‌ରେ 'Free India Centre' ପ୍ରତିଷ୍ଠା ଏବଂ ସେଠାରେ ଜର୍ମାନ ଦ୍ୱାରା ବନ୍ଦୀ ହୋଇଥିବା ୨୫୦୦ ଭାରତୀୟ ଯୁଦ୍ଧବନ୍ଦୀଙ୍କୁ ସାମିଲ କରି ଆଜାଦ୍ ହିନ୍ଦ୍ ଫୌଜ ଗଠନ

ମେ' ୧୯୪୨ : ଆଡଲଫ୍ ହିଟଲରଙ୍କ ସହିତ ପରାମର୍ଶ ପରେ ଜାପାନକୁ ଯାତ୍ରା ପାଇଁ ପ୍ରସ୍ତାବ ଓ ହିଟଲର ତାଙ୍କ ଯାତ୍ରାର ସମସ୍ତ ବନ୍ଦୋବସ୍ତ କରିଦେବାକୁ ସମ୍ମତି ପ୍ରଦାନ

୦୮.୦୨.୧୯୪୩ : ଆବିଦ୍ ହୁସେନଙ୍କ ସହିତ ଉତ୍ତର ଜର୍ମାନୀର କିଏଲ୍‌ଠାରୁ ସବମାରାଇନ୍ ଯୋଗେ ସମୁଦ୍ରପଥରେ ଜାପାନ ଅଭିମୁଖେ ଯାତ୍ରାରମ୍ଭ

୦୬.୦୫.୧୯୪୩ : ସୁମାତ୍ରାର ସବଂଗ ଦ୍ୱୀପରେ ଅବସ୍ଥାନ

୧୬.୦୫.୧୯୪୩ : ବିମାନ ଯୋଗେ ସବଂଗଠାରୁ ଟୋକିଓ ଯାତ୍ରା ଏବଂ ଜାପାନ ସରକାରଙ୍କ ଉଚ୍ଚପଦସ୍ଥ ନେତୃବୃନ୍ଦଙ୍କ ସହିତ ଆଲୋଚନା ପରେ ସେମାନଙ୍କର ସାହାଯ୍ୟ ପ୍ରାପ୍ତି

୨୧.୬.୧୯୪୩ ରୁ

୨୪.୬.୧୯୪୪ : ଟୋକିଓ ରେଡ଼ିଓରୁ ଭାଷଣ ପ୍ରସାରଣ

୩.୭.୧୯୪୩ : ସିଂଗାପୁରରୁ ରାହାସବିହାରୀ ବୋଷଙ୍କ ସହିତ ଆଲୋଚନା

୪.୭.୧୯୪୩ : ରାହାସବିହାରୀ ବୋଷଙ୍କ ଦ୍ୱାରା ଇଣ୍ଡିଆନ ନ୍ୟାଶନାଲ ଆର୍ମିର ଦାୟିତ୍ୱ ହସ୍ତାନ୍ତର ଓ ତାହାର ସଭାପତି ନିଯୁକ୍ତ

୫.୭.୧୯୪୩ : ଆଜାଦ୍ ହିନ୍ଦ୍ ଫୌଜର ସର୍ବୋଚ୍ଚ କମାଣ୍ଡର ଭାବରେ ସିଂଗାପୁର ସହରରୁ ଭାଷଣ ପ୍ରଦାନ ଏବଂ ସେହିଦିନଟି ତାଙ୍କ ଜୀବନର ସବୁଠାରୁ ମହତ୍ୱପୂର୍ଣ୍ଣ ଦିବସ ବୋଲି ବର୍ଣ୍ଣନା

୨୧.୧୦.୧୯୪୩ : ସିଂଗାପୁରର ସିଓନନ୍‌ଠାରେ ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାରର ଗଠନ ଘୋଷଣା

୨୨.୧୦.୧୯୪୩ : ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାରର ଗ୍ରେଟ୍‌ବ୍ରିଟେନ ଓ ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା

୦୪.୧୧.୧୯୪୩ : ଟୋକିଓ ଅଭିମୁଖେ ଯାତ୍ରା

୦୬.୧୧.୧୯୪୩ : ଜାପାନ ପ୍ରଧାନମନ୍ତ୍ରୀ ଆଣ୍ଡାମାନ ନିକୋବର ଆଇଲାଣ୍ଡ ଦ୍ୱୀପ ସମୁହକୁ ଅସ୍ଥାୟୀ ଆଜାଦ୍ ହିନ୍ଦ୍ ସରକାରଙ୍କୁ ହସ୍ତାନ୍ତର

୨୯.୧୨.୧୯୪୩ : ପୋର୍ଟ ବ୍ଲେୟାରକୁ ଯାତ୍ରା ଏବଂ ସେଠାରେ ପହଂଚି ସେ ଆଣ୍ଡାମାନକୁ ଶହୀଦ ଓ ନିକୋବରକୁ ସ୍ୱରାଜ ନାମରେ ନାମିତ ଏବଂ ପ୍ରଥମଥର ପାଇଁ ବ୍ରିଟିଶ ଚିଫ୍ କମିଶନରଙ୍କ ବଂଗଳାରେ ତ୍ରିରଂଗା ପତାକା ଉତ୍ତୋଳନ

ଜାନୁଆରୀ ୧୯୪୪ : ସିଂଗାପୁରଠାରୁ ରେଂଗୁନକୁ ଆଜାଦ୍ ହିନ୍ଦ୍ ଫୌଜନ କାର୍ଯ୍ୟାଳୟ ସ୍ଥାନାନ୍ତରିତ

୧୮.୩.୧୯୪୪ : ଆଜାଦ୍ ହିନ୍ଦ୍ ଫୌଜର ଭାରତ ମାଟିରେ ପ୍ରବେଶ

୦୪.୦୪.୧୯୪୪ : ଆଜାଦ୍ ହିନ୍ଦ୍ ଫୌଜ ଇମ୍ଫାଲଠାରୁ ୧୨ ମାଇଲ ଦୂର ମୋଇରାନ ସହରକୁ ଅକ୍ତିଆର କରି ସେଠାରେ ତ୍ରିରଂଗା ପତାକା ଉତ୍ତୋଳନ

୦୬.୦୪.୧୯୪୪ : ଆଜାଦ୍ ହିନ୍ଦ୍ ଫୌଜର କୋହିମା ଅକ୍ତିଆର

୨୪.୦୪.୧୯୪୫ : ବ୍ରିଟିଶ ଓ ଆମେରିକା ସୈନ୍ୟଙ୍କ ଚାପରେ ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟମାନଙ୍କର ରେଂଗୁନରୁ ପଛଘୁଞ୍ଚା

୦୬.୦୮.୧୯୪୫ : ଆମେରିକାର ହିରୋସୀମା ଉପରେ ପରମାଣୁ ବୋମା ନିକ୍ଷେପ

୦୯.୦୮.୧୯୪୫ : ଆଉ ଗୋଟିଏ ପରମାଣୁ ବୋମା ନାଗାସାକି ଉପରେ ନିକ୍ଷେପ

୧୪.୦୮.୧୯୪୫ : ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟମାନଙ୍କ ଉଦ୍ଦେଶ୍ୟରେ ନିଜର ଶେଷ ଆଦେଶ ପ୍ରଦାନ

୧୫.୦୮.୧୯୪୫ : ଜାପାନ ଯୁଦ୍ଧରେ ପରାସ୍ତ ହୋଇ ବ୍ରିଟେନ ଓ ଆମେରିକା ନିକଟରେ ଆତ୍ମସମର୍ପଣ

୧୫.୦୮.୧୯୪୫ : ନିଜ ଦେଶବାସୀଙ୍କ ଉଦ୍ଦେଶ୍ୟରେ ପୂର୍ବ-ଏସିଆରୁ ଶେଷ ଭାଷଣ ପ୍ରଦାନ

୧୬.୦୮.୧୯୪୫ : ହବିବୁର ରହମାନଙ୍କ ସହିତ ସାଇଗନକୁ ବିମାନରେ ଯାତ୍ରା ଏବଂ ବୋଧହୁଏ ସୋଭିଏଟ୍ ଋଷିଆରେ ରାଜନୈତିକ ଆଶ୍ରୟ ପାଇବାକୁ ମାଂଚୁରିଆ ଅଭିମୁଖେ ଯାତ୍ରା

୧୮.୦୮.୧୯୪୫ : ବିମାନଟି ଫର୍ମୋଜାର ତାଇପେଇ ବିମାନ ବନ୍ଦରଠାରେ ଇନ୍ଧନ ନେବାକୁ ଓହ୍ଲାଇବା ଓ ଇନ୍ଧନ ନେଇ ଯାତ୍ରା ଆରମ୍ଭ କଲାବେଳେ ବିମାନ ଦୁର୍ଘଟଣା ଏବଂ ଏହି ଦୁର୍ଘଟଣାରେ ସାଂଘାତିକ ଆହତ ହୋଇ ତାଇହୋକୁ ମିଲିଟାରୀ ହସପିଟାଲରେ ଚିକିତ୍ସିତ ହେଉଥିବା ଅବସ୍ଥାରେ ପ୍ରାଣତ୍ୟାଗ ଘଟିଥିବା ବିଷୟରେ ସୂଚନା

୨୩.୦୮.୧୯୪୫ : ଜାପାନ ସରକାରଙ୍କ ଦ୍ୱାରା ଟୋକିଓ ରେଡ଼ିଓରୁ ନେତାଜୀଙ୍କର ମୃତ୍ୟୁ ଖବର ଘୋଷଣା, କିନ୍ତୁ ଏହି ମୃତ୍ୟୁ ଖବରକୁ ଆଜି ପର୍ଯ୍ୟନ୍ତ ଭାରତୀୟମାନଙ୍କର ଅବିଶ୍ୱାସ ।





ଓଡ଼ିଶାର ଶିକ୍ଷା, ସଂସ୍କୃତି, ପ୍ରଶାସନ ଓ ସଂଗଠନ କ୍ଷେତ୍ରର ଜଣେ ସୁପରିଚିତ ବ୍ୟକ୍ତି ଡକ୍ଟର ବିମଳେନ୍ଦୁ ମହାନ୍ତି । ଅବିଭକ୍ତ କଟକ ଜିଲ୍ଲାର ଜଗତସିଂହପୁର ଅନ୍ତର୍ଗତ ମଙ୍ଗଳପୁର ଗ୍ରାମରେ ୯ ଡିସେମ୍ବର, ୧୯୩୭ରେ ତାଙ୍କର ଜନ୍ମ । ରେଭେନ୍‌ସା କଲେଜରୁ ୧୯୬୦ରେ ଇତିହାସରେ ସ୍ନାତକୋତ୍ତର ଶିକ୍ଷା ଲାଭ କଲାପରେ ପ୍ରାୟ ତିନି ବର୍ଷ ସେ କଟକ ଷ୍ଟୁଆର୍ଟସ୍ ବିଜ୍ଞାନ ମହାବିଦ୍ୟାଳୟରେ ଅଧ୍ୟାପନା କରିଥିଲେ । ଆମେରିକାର ମିସୋରୀ ବିଶ୍ୱବିଦ୍ୟାଳୟରୁ ଏମ୍.ଇଡି. ଓ ରାଞ୍ଚି ବିଶ୍ୱବିଦ୍ୟାଳୟରୁ ସେ ପିଏଚ୍.ଡି. କରିଛନ୍ତି । ଓଡ଼ିଶା ଓ ଭାରତ ସରକାରଙ୍କର ବିଭିନ୍ନ ଉଚ୍ଚ ପଦପଦବୀରେ କାମ କରିବା ସହିତ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ଛାତ୍ରକଲ୍ୟାଣ ବିଭାଗର ପ୍ରଥମ ଡିନ୍ ଓ ଜାଭିଏର୍ସ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମ୍ୟାନେଜ୍‌ମେଣ୍ଟର ପ୍ରଥମ ରେଜିଷ୍ଟ୍ରାର୍ ଭାବରେ ସେ କାମ କରିଥିଲେ । ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ପଦରୁ ୨୦୦୧ ମସିହାରେ ସେ ଅବସର ଗ୍ରହଣ କରିଛନ୍ତି ।

ଉଭୟ ଓଡ଼ିଆ ଓ ଇଂରାଜୀରେ ଡକ୍ଟର ମହାନ୍ତିଙ୍କର ପ୍ରାୟ ୨୦ଟି ପୁସ୍ତକ ରହିଛି । ସେସବୁ ମଧ୍ୟରେ 'ଆମେ ଓଡ଼ିଆ ଏବଂ ଅନ୍ୟାନ୍ୟ', 'ବ୍ୟକ୍ତି, ସଂସ୍କୃତି ଓ ସାଂପ୍ରତିକୀ', 'ଜାତିପ୍ରାଣ ମଧୁସୂଦନ', 'ଶ୍ୱେତ ପ୍ରାସାଦରେ କୃଷ୍ଣାଙ୍ଗ ରାଷ୍ଟ୍ରପତି', **'Glimpses of Buddhist Legacy in Orissa'**, **'Buddhist Heritage- From Kalinga to Srilanka'** ଆଦି ଉଲ୍ଲେଖନୀୟ । ତାଙ୍କ ସଂପାଦିତ ଅନ୍ୟ ପୁସ୍ତକ ମଧ୍ୟରେ **'Padmasambhava of Uddiyan-Odisha '** ବିଶେଷ ଗୁରୁତ୍ୱପୂର୍ଣ୍ଣ ।


ଆମ ଓଡ଼ିଶା
ĀMA ODISHĀ


ISBN 818943662-7
9788189436627